# BISAMODAK

*( A DRAMA )*

**BY**

RAM SANKAR ROY.

# ବିଷମୋଦକ

( ନାଟକ )

ଶ୍ରୀ ରାମଶଙ୍କର ରାୟଙ୍କ ଦ୍ୱାରା

ବିରଚିତ ।

ପ୍ରଥମବାର ମୁଦ୍ରିତ ।

CUTTACK:
Printed by the Cuttack Printing Company, Limited.
1900.
ମୂଲ୍ୟ [illegible]

# BISAMODAK

( *A DRAMA* )

BY

RAM SANKAR ROY.

---

# ବିଷମୋଦକ

( ନାଟକ )

ଶ୍ରୀ ରାମଶଙ୍କର ରାୟଙ୍କ ଦ୍ୱାରା

ବିରଚିତ ।

ପ୍ରଥମବାର ମୁଦ୍ରିତ ।

CUTTACK:

Printed by the Cuttack Printing Company, Limited.

1900.

## ନାଟକଗତ ବ୍ୟକ୍ତିମାନଙ୍କର ନାମ ।

### ପୁରୁଷ ।

ଚୌଧୁରୀ ସଦାନନ୍ଦ ଝୁଙ୍କାଯନ୍ତ୍ର — ଜମିଦାର ।

ଧନପତିରାମ ଭଗତ — ମହାଜନ ।

ବଂଶୀଧର ଦାସ }
ନିଶାକର ମହାନ୍ତି } — ଜମିଦାରର ଗୁମାସ୍ତା ।

କମଲଲୋଚନ ଘାନ୍ତସ — ଜମିଦାରର ସଙ୍ଗୀ ।

ଗଙ୍ଗାଧର — ଜନୈକ ମହାଜନର ଗୁମାସ୍ତା ।

ରତନ ବାରିକ — ଜମିଦାରର ଚାକର ।

ଭଜନ ବାରିକ — ମହାଜନର ଚାକର ।

ଶଠଶିଖର }
ଦିଗମ୍ବର } — ଟରଣୀଦ୍ୱୟ ।

ଜ୍ଞାନଭଣ୍ଡାର ଗାଙ୍ଗୁଲି }
ଚିନ୍ତାମଣି ନନ୍ଦ } — ଓକିଲ ଦ୍ୱୟ ।

ବଳା ବେହେରା — ଭରୁଆ ।

ଅଲ୍ଲିସାହେବ, ଡାକ୍ତର, ଢ଼ମଲା, ଚପରାସୀ, ଧୂମ୍ରକରଣ, ଅସେଇର, ସାଧୁ, କାବୁଲି ଇତ୍ୟାଦି ।

### ସ୍ତ୍ରୀ ।

ବିଷ୍ଣୁପ୍ରିୟା — ଜମିଦାରର ସ୍ତ୍ରୀ ।

ଚନ୍ଦ୍ରମାଳୀ — ଐ ଦାସୀ ।

ଇନ୍ଦୁମଞ୍ଜରୀ — ଐ ପୁତ୍ରବଧୂ ।

ସାଧବାମା — ଐ ଐ ଧାଇମା ।

ବାଈ ।

# କିଞ୍ଚିମୋଦନା ।

## ପ୍ରସ୍ତାବନା ।

[ ଅଦୃଷ୍ଟ-ଭୂମାସ୍ୱୀମାନଙ୍କର ପ୍ରବେଶ ଓ ନୃତ୍ୟ ସହିତ ଗୀତ । ]

ରାଗିଣୀ ଅଲେୟା । ତାଳ ଏକତାଳୀ ।

ଭାବ ଭାବୁକେ ଦବ୍ୟଚତ୍ତେ ।

ସାରେ ମନୁଷ୍ୟ ଅଦୃଷ୍ଟର ଦାସ—ବନ୍ଧ ତାର ପାଶ ଅଛଇ ନଭବେ ।

ଘୋଷା ।

କେହୁ ରାଜା କେହୁ ଦୁଃଖୀ ଘରେ ଜାତ,
କେ ସ୍ୱଜ ଆସନୁଁ ହୁଅଇ ପତିତ,
କେହୁ ଦୁଃଖୀ—ଧନ     ରାଜ-ସିଂହାସନ
ଭୋଗ କର ଭାଗ୍ୟ ନ ଯାଏ ପରତେ । ୧ ।

କେହୁ ଅର୍ଜି ବିଦ୍ୟା ବୋଲାଏ ପଣ୍ଡିତ,
କେହୁ ବହୁପଢ଼ି ଯେମନ୍ତ ତେମନ୍ତ,
କେ ଆଶା-ଶିଖରେ     ଚଢ଼ି ନୃତ୍ୟ କରେ,
କେ ମରଇ ବୁଡ଼ି ନିରାଶା-ସନ୍ତରେ । ୨ ।

ଘରେ ନାହିଁ ଅନ୍ନ କେହୁ ଲମ୍ଫ-ଶାଟ,
କେ ବିପୁଳ ଧନେ କଲାଇ କପାଟ,
ଅଯାଚିତ ଧନ     କେ ପାଇ ପ୍ରସନ୍ନ,
ସର୍ବସ୍ୱ ହରାଇ କେ ମରେ ଜୀଅନ୍ତେ । ୩ ।

କେହୁ ସତ୍ୟବାଦୀ ମରଇ ସତ୍ୟରେ,
କେହୁ ପ୍ରାଣପଣେ ସତ୍ୟ ନାହିଁ ବୋଲେ,

କେ ଧର୍ମ-ପ୍ରଚାର ସନ୍ତୋଷ ଆକର,
ଲୋଭେ ପାପେ ନର୍କ ଭୁଞ୍ଜେ କେ ନରକେ । ୪ ।
ପୂର୍ବ ଜନ୍ମାର୍ଜିତ କର୍ମଫଳ ଜାତ,
ଅଦୃଷ୍ଟ ଲିପିରେ ଅଛଇ ଲିଖିତ,
ଈଶ୍ୱର ବିଧାନ କେ କରିବ ଆନ,
କର ଭଗବାନ ଭରସା ଜଗତେ । ୫ ।

ଯବନଙ୍କ ପତନ ।

# ପ୍ରଥମ ଅଭିନୟ ।

## ପ୍ରଥମ ଦୃଶ୍ୟ । ଜମିଦାରୀ କଚେରୀ ଘର ।

[ ବଂଶୀଧର ଦାସ ଓ ନିଶାକର ମହାନ୍ତି ଆସୀନ । ସମ୍ମୁଖେ ବଡ଼ ଏ ତାଲପତ୍ର ଖୋଲା ହୋଇ ସ୍ଥାପିତ । ]

ବଂଶୀ ।—ନିଶାକର ଭାଇ, କେମନ୍ତ—କାର୍ଯ୍ୟଟା କି ମନ୍ଦ ହୋଇଛି ?

ନିଶା ।—କିଏ ମନ୍ଦ କହିବ ? ଆଉ ଭାଇ ମାସକୁ ତିନଟା ଟଙ୍କା ବେତନ ପାଇ କି ଚଳ ହୁଏ ? ହାତ ଗୁହାର ସଲାମି ଅବା ଯେତେ ଫେଷ୍ଟି କର ମାଗି ଆଣିଲା ତଥଣ ସଡ଼କାଏ ପର କୁଆଡ଼େ ଉଡ଼ିଯାଏ ଜଣାଯାଏ ନାହିଁ ପରା ।—ବଂଶୀ ଭାଇ ତୁ ଯେଉଁ ବୁଦ୍ଧି କାଢ଼ିଲୁ ଏଥିରେ ନିହାଲ ହୋଇଯିବା ।

ବଂଶୀ ।—ସେଥିରେ କି ସନ୍ଦେହ ଅଛି ? ପଞ୍ଚାଶ ହଜାର ଟଙ୍କାରେ ମହାଜନର ମିଠାଇଖିଆ ଶତକଡ଼ା ଅଢ଼ାଇ ଟଙ୍କା ଯାଇ ବାକି ଅଢ଼ାଇ ଠେଙ୍କାଠା ଆମ୍ଭମାନଙ୍କର । ଶତକଡ଼ା ଅଢ଼ାଇ ଟଙ୍କା ଦେଲେ ଆମ୍ଭମାନଙ୍କୁ ସବସୁଦ୍ଧା ସାଢ଼େ ବାରଶ ଟଙ୍କା ମିଳବ ।

ନିଶା ।—ମହାଜନର ମିଠାଇଖିଆ ଊଣା ହେବ ନାହିଁ ।

ବଂଶୀ ।—ଏହା ଅଉ ପଚାରିବାକୁ ଅଛି । ସେମାନେ ଝିଅ ପଥୁରିଆ ଲୋକ—ଯାହା ଧରି ଥିବେ ତାହି । ସେ ପରା କାହିଁରେ ନୋଇଁବାର ନୁହନ୍ତି ! ତାଙ୍କର ମିଠାଇ ଖିଆ ନାମରେ ସେ ପାଞ୍ଚ ଟଙ୍କା ନେବେ—ଆମ୍ଭମାନଙ୍କୁ ଦେବେ ଅଧେ । ମାତ୍ର ଭାଇ, ମୁଁ ଯେତେବେଳେ ବଡ଼ ଶ୍ରୀକର ମୋର ଦୁଇଭାଗ ହୋଇ ଲାଗେ ।

ନିଶା ।—( ଟିକିଏ ଚମକି ) ବଂଶୀ ଭାଇ, ତୁ ଯାହା କହିଲୁ

ସେଥିରେ ମୋର କିଛି ମନା ନାହିଁ ମାତ୍ର ଭୁଲ ଜାଣୁ ମୋର ପର ଅମାରଘର ଖଣ୍ଡିଏ ବନାଇବାକୁ ଅଛି ଆଉ ଝିଅକୁ ଶାଶୁ ଘରକୁ ବିଦାୟ କରିବାକୁ ହେବ ।—ମୋତେ ଆଉ କିଛି ଅଧିକ ଦେ ।

ବଂଶୀ ।—ଭାବନା କାହିଁକି କରୁଛୁ ?—ଯେଉଁ ମହାଜନମାନଙ୍କ ଟଙ୍କା ପରିଶୋଧ ହେବ ସେଥିରୁ ଶତକଡ଼ା ପାଞ୍ଚ ଟଙ୍କା ବାହାରିବ ନାହିଁ କି ?

ଜଣା ।—ସେ ମହାଜନମାନେତ ଜମିଦାରଙ୍କୁ ଛାଡ଼ି ଦେବେ ନାହିଁ ଶୁଣୁ ଥିଲି ।

ବଂଶୀ ।—ସେମାନେ କି ଛାଡ଼ନ୍ତି ଯେ ଛାଡ଼ିବେ । ତାଙ୍କ ଗୁମାସ୍ତାଙ୍କ ସଙ୍ଗରେ କଥା ହୋଇଛି—ମୁଁ ହିସାବ ଦେବାରେ ଶତକଡ଼ା ପାଞ୍ଚ ଟଙ୍କା ଅଧିକ କରି ଦେବି, ମହାଜନଙ୍କ ଗୁମାସ୍ତାମାନେ ତହିଁରୁ ଦୁଇଟଙ୍କା ନେବେ ବାକୀ ତିନି ଟଙ୍କା ଆମ୍ଭମାନଙ୍କର । ଜମିଦାର କଣ ହିସାବ ଦେଖିବେ ?—ମୁଁ ହିସାବ କରି ଜମି-ଦାରଙ୍କ ଆଗରେ ଥୋଇ ଦେବି ତୁ ଦେଖି କରି କହିବୁ ହଁ ଠିକ ହୋଇଛି ।

ଜଣା ।—ଭଲ ଭଲ । ତୋର ବୁଦ୍ଧିର ପଟାନ୍ତର ନାହିଁ ।—ଏ ଜମି-ଦାରଟା ସରିବାକୁ ବସିଲାଣି ।

ବଂଶୀ ।—ତାକୁତ ଲକ୍ଷ୍ମୀ ଛାଡ଼ିଲେଣି । ତାର ସମ୍ପତ୍ତି ସରିଲେ ଆମ୍ଭ-ମାନଙ୍କର ଗୃହଲକ୍ଷ୍ମୀ ଯିବ । ଏତିକି ବେଳୁଁ ଯାହା ଦୁଇ ପଇସା ଛାଆଇଥିବା ପଛକୁ କାର୍ଯ୍ୟରେ ଲାଗିବ ।

ଜଣା ।—ତୋରତ ପାଞ୍ଚଶ ଟଙ୍କା ପର୍ଯ୍ୟନ୍ତ ରିପୋର୍ଟ ହୋଇ ଗଲାଣି—ମୋତେ ଭଲା ଶଏ ଟଙ୍କା ପର୍ଯ୍ୟନ୍ତ କରାଇ ଦେ ।

ବଂଶୀ ।—ଅସ୍ଥି ଧର—ଶଏ କଣ ଦୁଇଶ ଟଙ୍କାର ଯେବେ ରିପୋର୍ଟ

କର ନ ନେବୁ ତେବେ ମୋତେ ମହାନ୍ତି ପୁଅ ବୋଲି କହିବୁ ନାହିଁ । ଜମିଦାରର ଆଚରଣ ଯେପରି ହେଲାଣି ସେତ ଟଙ୍କା ପରିଶୋଧ କରି ପାରିବ ନାହିଁ—ମାମଲା ମୋକଦ୍ଦମା ହୋଇ ସମ୍ପତ୍ତି ନିଲାମରେ ଆସିଲେ କେତେ ରୂପେ ଟଙ୍କା ଭିଆଇ ନେବା । ନାହିଁ ଯଦି ଜମିଦାର ସ୍ୱେଚ୍ଛାରେ ସମ୍ପତ୍ତି ବିକିବାକୁ ବସିବେ ଆମ୍ଭମାନଙ୍କର ପଣେ ଉତ୍ତମରୂପେ ଭିତରି ଅର୍ଜନ ହୋଇଯିବ ।

ଜଣା ।—ତୁତ ମୋର ମହାପ୍ରସାଦ ବନ୍ଧୁ—ତୋତେ ଆଉ ଅଧିକ କସ କହିବ । ମାତ୍ରକ ଏ ମହାନ୍ତିଟା ଉଚ୍ଛନ୍ନ ହେବାକୁ ବସିଲାଣି—ଏହାର ପଇସା ଖାଇବାକୁ ଏତେବେଳେ ଭାଇ କେମନ୍ତ ଠିକଏ ଅଡୁଆ ଲାଗୁଛି । ସେତ ମନୁଷ୍ୟ ନୁହେ—ଆମ୍ଭେମାନେ କସ କରିବା ?

ବଂଶୀ ।—ଅରେ କାଉ ସିନା କାଉ ମାଂସ ଖାଏ ନାହିଁ—ମହାନ୍ତି ମହାନ୍ତି ମାଂସ ଖାନ୍ତି ।

[ ଗଙ୍ଗାଧରର ପ୍ରବେଶ ।

କ ଗଙ୍ଗାଧର—ଦଣ୍ଡବତ ( ହାତ ଯୋଡି ଦଣ୍ଡବତ କରି ) ଆସ ଆସ ।

ଜଣା ।—ଦଣ୍ଡବତ୍ ଗଙ୍ଗାଧର ଭାଇ (ହାତ ଯୋଡି ଦଣ୍ଡବତ୍ କରଣ)।

ଗଙ୍ଗା ।—( ହାତ ଯୋଡି ଦଣ୍ଡବତ କରୁ୨ ) ଦଣ୍ଡବତ୍ ଦଣ୍ଡବତ୍ ( ବଂଶୀଧର ନିକଟରେ ଉପବେଶନ ) ।

ବଂଶୀ ।—ଗଙ୍ଗା ଭାଇ ସବୁ ଠିକ ହେଲାତ ?

ଗଙ୍ଗା ।—ଅରେ ଭାଇ ମୋ ମହାଜନଠା ଏଡ଼େ ବଢ଼—ମୋର ଦୁଇ ଟଙ୍କାରୁ ପଗ ସେ ଅଠଅଣା ନେଲା ତେବେ ଯାଇଁ ହଁ କଲା !

ବଂଶୀ ।—( ଆଶ୍ଚର୍ଯ୍ୟ ହୋଇ ) କଣ କହୁଛ ! ତୁମ୍ଭ ପଇସାରୁବ ନେଲା ! ତା ନାମ ହାତ ସେଟା କାର୍ଯ୍ୟରେବ ହାଡ ।

*

ନଶା ।—ଅରେ ସେ ଗୁଡ଼ଥ କଥା କହ ନାହିଁ ହୋ—ତା ନାମ ଧର ନାହିଁ !—ଆଜ କସ କପାଳରେ ଅଛି କେ ଜାଣି ? ଆମ୍ଭ ଗ୍ରାମର ବସୁନ ସ୍ୱାଇଁ ତା ଠାରୁ ଦଶ ଟଙ୍କା ନେଇଥିଲା ଯେ ବେଶ୍ୱର ଶଏ ଟଙ୍କା ଆଗହୁଁ ଦେଇଥିଲା—ସେତ ଲେଖା-ପଢ଼ା ଜାଣେ ନାହିଁ—ଗୁଡ଼ିଆ ତମସୁକରେ ପଞ୍ଚାଶ ଟଙ୍କା ଅସୁଲ ଲେଖି ଆଉ ପଞ୍ଚାଶ ଟଙ୍କାତ ମାନିଲା ନାହିଁ । ତା ହେସାବକୁ ଦେଡଶ ଟଙ୍କା ବାକୀ ହୁଅନ୍ତା—ଗଲା ସେ ଏମନ୍ତ ଗୋଲମାଲ କଲା ଯେ କଡ଼ା ଗଣ୍ଡା କର ତାଠାରୁ ତିନଶ ଟଙ୍କା ନେଲା—ଛୁଡ଼ିଲା । କେତେ ଭଲଲୋକ ପଶିଲେ ସେଥିରେ କଛୁ ହେଲା ନାହିଁ । ମାମଲା କଲେ ହାକମ କିସ ବୁଝନ୍ତେ ଠିକଣ ନାହିଁ । ବେଶ୍ୱଲ କାନ ନାକ ମୋଡ଼ହୋଇ ଟଙ୍କାତ ଦେଲା—ତାର ଜୀବନ ଗଲା ସେଥିପାଇଁ । ତାର ପିଲାଏ ପର ଭିକ୍ଷା ମାଗି ବୁଲୁଛନ୍ତି ।

ଗଙ୍ଗା ।—ଯାହାହେଉ ମହାଜନତ ହିଁ ଭଣିଲା ଏଥର ତୁମ୍ଭେ ହେସାବ କେତାବ ଠିକ କର ।

ବଂଶୀ ।—ହେସାବ କେତାବ ସବୁ ଠିକ ହୋଇଛି । ଅଉ ମହାଜନ-ମାନଙ୍କର ଗୁମାସ୍ତାମାନେ ଆସିଥିଲେ ସେମାନଙ୍କର ସବୁ ଠିକ ହୋଇ ରହିଛି—ଖାଲି ତୁମ୍ଭଙ୍କୁ ଅପେକ୍ଷା ଥିଲା । ମୁଁ ଜମିଦାର ନକଟକୁ ବେହେରା ପଠାଇଛି ଦଣ୍ଡକ ଉତ୍ତାରୁ ଡାକରା ହେବ ।

ଗଙ୍ଗା ।—ମୁ ତେବେ ଯାଉଛି ? ତୁମ୍ଭେତ ସବୁ ଠିକ କର ନେବ—ମୋ ଦେହା କ କାମ ?

ବଂଶୀ ।—ହେଉ, ତୁମ୍ଭେ ଆସ ।

[ ଗଙ୍ଗାଧରର ପ୍ରସ୍ଥାନ ଓ ପଟ ପରିବର୍ତ୍ତନ ।

ଦ୍ୱିତୀୟ ଦୃଶ୍ୟ । ବୈଠକଖାନା ।

[ ସଦାନନ୍ଦ ଓ କମଲଲୋଚନ ଆସୀନ । ]

ସଦା ।—ଧନପତି ଗମଟି ବଡ଼ ଭଲଲୋକ । ନାମ ଶୁଣିଲା ମାତ୍ରକେ ଗଳ୍ପ ହୋଇଗଲା ।

କମ ।—ଏ କ କଥା ଆପଣ କହୁଛନ୍ତି ? ଆପଣଙ୍କ ନାମ ଶୁଣି କେଉଁ ଭଗବତଟା ଟଙ୍କା ଦେବାକୁ ଲଣ୍ଡଭଣ୍ଡ ନ ହେବ ? ଆପଣ ଲକ୍ଷପତି—କଣ ସୁଦ ଦେଇ ନ ପାରିବେ ନା କସ ?

ସଦା ।—ତଥାପି ଧନପତି ଆଉ ଭଗବତଙ୍କ ପରି ଶୁଖିଲାମୁହାଁ ନୁହେ । ସେ ଭଗବତ ଗୋଷ୍ଠିରୁ ବାହାର—ଲୋକଙ୍କୁ ମାନ ମର୍ଯ୍ୟାଦା କରି ଜାଣେ ।

କମ ।—ହଁ । ସେଥିରେ ଆଉ ସନ୍ଦେହ କ ଅଛି ? ମାତ୍ର ସୁଦ ଦେ- ହରେକ ପଇସାଟାଏ କମ ହେଲା ନାହିଁ—ଯେତେ ହେଲେ ବ୍ୟବସାୟୀ ।

ସଦା ।—ହେଉ ସେ କଥା ପଛେ ହେବ । ଅମ୍ଭେ ନଜେ ଥରେ ଗଲେ ମହାଜନର ଅବଶ୍ୟ ଉସୁଲକ୍ଷା ହେବ ।

କମ ।—ତା ହେବ ।—ଆପଣ ଗଲେ ପାହାଡ଼ ପାଣି ହୋଇଯିବ ! ସାହେବ ସୁବା ଯାଙ୍କୁ ଆଦର କରନ୍ତି ମହାଜନର ସାଧ୍ୟ କସ ତା କଥା ଟାଳ ଦେବ ? ଥରେ ସିନା ମନା କଲା !

ସଦା ।—ଦେଖିଲ ନାହିଁ ସେଥର ପଶ ଦରବାରକୁ ଆମ୍ଭଙ୍କୁ ନମନ୍ତ୍ରଣ ହୋଇ ନ ଥିଲା —ଆସିଷ୍ଟାଣ୍ଟଙ୍କ ସଙ୍ଗେ ସାକ୍ଷାତ କରି ଉଟାଉ ଦେଲା ମାତ୍ରକେ ସାହେବ ନମନ୍ତ୍ରଣପତ୍ର ପଠାଇ ଦେଲେ ?— ଦଶଜଣ ଉପଗସୀ ନମନ୍ତ୍ରଣ ପତ୍ର ସଙ୍ଗେ ଆସିଥିଲେ—ତାଙ୍କର ସମ୍ମାନ ହେଲା ନାହିଁ ।

କମ ।—ସେମାନେତ ଆପଣଙ୍କ ଭଳ ଲୋକଙ୍କୁ ଦେଖିଲେ

ଜଣେ ଜଣେ ସ୍ୱୟଂ ମ୍ୟାଟସାହେବ ହୋଇ ଯାନ୍ତି । ସେ ଯାହା ହେଉ ଯେମନ୍ତ ସାହେବଙ୍କ ସଙ୍ଗେ ଦେଖାଟା କରାଇ ଦଅନ୍ତି ତେମନ୍ତ ଆପଣମାନେ ସନ୍ତୁଷ୍ଟ ହୋଇ ପାଞ୍ଚ ପଚାଶ ଦେଇ ଆସନ୍ତି ।

ସଦା ।—ତା କୁହେ ଆଉ କଣ ।---ଗାଡ଼ ଦେଖିଲେତ ଦଉଡ଼ ଆସି ଖୁରୁସି ଦେଇ ଟିକଟ ଖଣ୍ଡିକ ସାହେବଙ୍କ ହଜୁରକୁ ଘେନ ଯାନ୍ତି । ସାହେବ ଟିକଟ ଦେଖି ତତ୍‌କ୍ଷଣାତ୍ ଡକାଇ ପଠାନ୍ତି । ଏକା ଭାଇ ସାହେବ ତାଙ୍କୁ ଦେଖିଲେ ଭାରି ଖୁସି ହୁଅନ୍ତି —ଦେଖିଲା ମାତ୍ରକେ ଚଉକୀରୁ ଉଠି ଆସି ହାତ ଧର ନେଇ ଯାନ୍ତି ।

କମ ।—ସାହେବଙ୍କ ସଙ୍ଗରେ ଉତ୍ତମ କଥାବାର୍ତ୍ତା ହୁଏ ନା ?

ସଦା ।—ବେଶ କଥାବାର୍ତ୍ତା ହୁଏ । ଯେଉଁମାନେ ଇଂରାଜୀ ଜାଣନ୍ତି ସାହେବଙ୍କ ସଙ୍ଗେ ତାଙ୍କର କଥାବାର୍ତ୍ତା ଉତ୍ତମ ଚଳେ । ଆମ୍ଭେତ ଇଂରାଜୀ ନ ଜାଣୁଁ, ତଥାପି ସାହେବ ଟିକଏ ଓଡ଼ୀୟା ଜାଣନ୍ତି ବୋଲି ଘର କଥା ଭଲ ମନ୍ଦ କଥା ପଚାର ବଦାୟ କର ଦଅନ୍ତି ।

କମ ।—( ଟିକଏ ଆଶ୍ଚର୍ଯ୍ୟଭାବ ଦେଖାଇ ) ଘର କଥା ପଚାରନ୍ତି ?

ସଦା ।—( ଗମ୍ଭୀର ହୋଇ ବସି ) ଆଉ କଣ ?—କେତୋଟି ପିଲା —କ ଲେଖା ପଢ଼ା କରନ୍ତି—ଯେତେବେଳେ ଦେଖା କରି-ବାକୁ ଯାଉଁ ସବୁ ବେଳେ ସେହି କଥା ।

କମ ।—ସେମାନେ ଲେଖା ପଢ଼ାକୁ ଭଲ ଚାହାନ୍ତି ।

ସଦା ।—ଆମ୍ଭର ପିଲାଏ ପଢ଼ିଲେ କେତେ ନ ପଢ଼ିଲେ କେତେ ? —ଚାକରୀତ କରିବେ ନାହିଁ—କେଉଁ ଏବେ ଖାଇବା ପିଇ-ବାକୁ ଊଣା ଅଛି ?

କମ ।—ଆଉ କଣ — ପାଠ ପଢି ଇସକୁଲିଆ ପିଲାଙ୍କ ପରି ଚାଙ୍ଗ ଭଲ ଦେହ ଧରିବାଠାରୁ ଘରେ ବସି ହୃଷ୍ଟପୁଷ୍ଟ ହୋଇ ଜମି- ଦାର ପୁଅ ବୋଲାଇବା ଶତ ଗୁଣେ ଭଲ ହୋ ! ଧ୍ୱାଟି ଥିଲେ ଯିହା ମାଷ୍ଟ ଲାଗିବ ? ସେ ବଷ୍ଟ ଥିଲେ କେତେ ଲୋକଙ୍କୁ ପୋଷିବେ । କେତେ ଲୋକ ତାଙ୍କ ପାଇଁ ପାଠ ପଢୁ ଜାହାନ୍ତୁ ଯେ ସେ ପାଠ ପଢି ଦେହର ରକ୍ତ ଶୁଖାଇବେ କାହିଁକି ?

ସଦା ।—ଠିକ କହୁଛ ।

[ ବଂଶୀଧରର ପାଞ୍ଜି ବଡାଏ କାଖରେ ଧେନ ପ୍ରବେଶ ।

ବଂଶୀ ।—(ଦଣ୍ଡବତ ହୋଇ) ମହାଜନଙ୍କ ହେସାବ ନକାଶ ହେଲା ।

ସଦା ।—ସବୁ ନକାଶ ହେଲା ? ମହାଜନଙ୍କ ଗୁମାସ୍ତାଏ ଆସିଥିଲେ ?

ବଂଶୀ ।— ଅବଧାନ ତାଙ୍କ ସାକ୍ଷାତରେ ହେସାବ ହୋଇଛି ।

ସଦା ।—ହେସାବ ଆଣିଛ ?

ବଂଶୀ ।—ଅବଧାନ (ପାଞ୍ଜିବଡ଼ା ସଦାନନ୍ଦଙ୍କ ସମ୍ମୁଖେ ସ୍ଥାପିତ କରଣ) ।

ସଦା ।—( ପାଞ୍ଜିବଡାକ ଉଠାଇ ) ଓଃ କେତେ ଭାରୀ ହୋଇଛୁ ହୋ ! ତୁମ୍ଭେ କଣ ଏତେ ପତ୍ର ହେସାବ ଲେଖିଛ ?

ବଂଶୀ ।—ଅବଧାନ —ପଚାଶ ହଜାର ଟଙ୍କାର ହେସାବ କ ଖଣ୍ଡିଏ ପତ୍ରରେ ହେବ ? ଲେଖି ଲେଖି ମୋର ପଗ ଟିପ ପ୍ରାୟ ହୋଇ ଗଲାଣି ।

ସଦା ।—ହଁ ଏତେ ଲେଖିଲେ ଟିପର ଅବସ୍ଥା ରହିବ ?—ତୁମ୍ଭେ ଖୁ ଲେଖି ପାର ।

ବଂଶୀ ।—( କର ଯୋଡ଼ ) ଅବଧାନ, ନ ଲେଖିଲେ ହେସାବ କେତାବ ଠିକ ହୋଇ ରହିବ କପରି ? ମୁନିବଙ୍କ କଡାଏ କଉଡ଼ି ଗଲେ ଦେହରୁ ପଲେ ମାଂସ ଗଲା ପରି ହେବ ।—ଆପଣତ ଜାଣି ଥିବେ ମୁଁ ସେପରି ବଣ୍ଠାସଦାତକ ଶୁକର ନୁହେଁ । ହେସାବ କେତାବ ଠିକ ନ ଥିଲେ ଏ ମହାଜନମାନେ ଯେପରି ମନୁଷ୍ୟ ଦଣ୍ଡ କରନ୍ତି ଘର ଦ୍ୱାର ବୁଡ଼ାଇ ଦେବେ !

ସଦା ।—ଆଉ କଣ । ଅମ୍ଭେ ସେଥି ସକାଶେ ବାଛି ବାଛି ତୁମ୍ଭଙ୍କୁ ଉପଯୁକ୍ତ ଦେଖି ଚାକର ରଖିଛୁଁ—ତୁମ୍ଭେ ନ ଥିଲେ ଅମ୍ଭଙ୍କୁ କେତେ ହରବର ହେବାକୁ ପଡୁଥାନ୍ତା !—ରତନା, ରତନା—

ନେପଥ୍ୟେ ।—ଅଜ୍ଞା—

[ ରତନ ବାରକର ପ୍ରବେଶ ।

ସଦା ।—ଜଣାକରଙ୍କୁ ଡାକ ।

ରତ ।—( କରଯୋଡ଼ ) ଯେ ଆଜ୍ଞା । —( ପ୍ରସ୍ଥାନ । )

ହମ ।—( ଆଶ୍ଚର୍ଯ୍ୟାନ୍ୱିତ ହୋଇ ) ପଚଶ ହଜାର ଟଙ୍କା ହେସାବ ହୋଇଗଲା !

ବଂଶୀ ।—ଆଉ କଣ ? —ସୁଦ ଦଉଡ଼ିଲୁ ଘୋଡ଼ା ଦଉଡ଼ ଲାଗେ ନାହିଁ ପରା ।

ସଦା ।—ତା ନୁହେ କ ? ଭୁକ୍ତା ସୁଦତ—ଅସଲ ଜାଣି ଦଶ ହଜାର ।

ହମ ।—ଦଶ ହଜାର ନା ମିଠାଇ ଖିଆ ଯାଇ ଅଠ ହଜାର ?

ସଦା ।—ଯାହା କହିଲ ।—ମହାଜନେତ ପାହୁଲାଟାଏ ଛାଡନ୍ତି ନାହିଁ ।

ବଂଶୀ ।—କେଲାବେଳେ ଛଣ୍ଡି ଚପି ନେବେ ।

ହମ ।—ଟଙ୍କା ଅଦାୟ ହୋଇଗଲେ ସୁଦଟି ଆଉ ମିଳବ ନାହିଁ—ସେମାନେତ ଗୃହାନ୍ତି କେମନ୍ତ ଋଣଟା ପରିଶୋଧ ନୋହୁ ।

ସଦା ।—( ହସୁ ) ତାହାଉ ଗୋଳଆ ଘୋଳଆ ହୋଇ ଯେତେ ଟଙ୍କା ଅସି ପାରେ ଅସୁ ।

ବଶୀ ।—( କର ଯୋଡ଼ ) ଠିକ ଅବଧାନ ହୋଇଛନ୍ତି ।—ନାହା ଭଉବାକୁ ନାଉଁଛି—ସାହୁ ଭଉବାକୁ କଉଡ଼ ।

[ ଜଣାକରଙ୍କର ପ୍ରବେଶ ।

ଜଣା ।—( ଦଣ୍ଡବତ ହୋଇ ) ଅବଧାନ, କ ଆଜ୍ଞା ହେଉଛି ?

ସଦା ।—ଏ ହେସାବ ତୁମ୍ଭେ ଦେଖିଛ ?

ଜଣା ।—ଅବଧାନ ପତ୍ରଗୁଡାକ ତନଥର କରି ଦେଖିଛି —ତଲେ

ଲେଖି ଖଡ ଲେଖି ଗୋଟାଯାକ ଘୋର ହୋଇ ଯାଇ ଏତଚ ହିବଏ ଗୋଟାଳ ଅଛି ( ଅଣ୍ଟାରୁ ଗୋଟାଳଟିଏ ବାଢି ପ୍ରଦର୍ଶନ ) ।

ସଦା ।—( ଗୋଟାଳ ନେଇ ) ଏତ ନୂଆ ଗୋଟାଳ ।

ବଣୀ ।—ସେହିଥିରେ ହେସାବ କରୁଥିଲ ଯଗ । ଅବଧାନ ଆମ୍ଭ ଘର କଣ୍ଠାସୀ ଗୃହର ପାଇବେ ନାହିଁ ।

ସଦା ।—ହିଁ ହୋଇଥିବତ ।—ଏତେ ବଡ ବଡାଟା, ଖଡ ଗୋଟା-ଯାକ ଘୋର ହୋଇ ଯାଇ ନ ଥିବ କ ? ବଣି, ତେବେ ଅଉ ବିଲମ୍ବ କାହିଁକ ?

ବଣୀ ।—ନାହିଁ, ବିଲମ୍ବ ଅଉ କଣ —କାଲି ମହାଜନ ଘରୁ ଟଙ୍କା ଅଣିଲେଇ ଦେଇ ଦେବା ।

ସଦା ।—ମହାଜନ କଛି ସୁଦ୍ର ଉଣା କରବେ ନାହିଁ ?

ବଣୀ ।—ଅପଣ ନଜେ ଥରେ କହିଲାଠୁ ଦେଖାଯିବ ।

ରାମ ।—ଅଚ୍ଛା, ପଚଶ ହଜାରଉ ମହାଜନ ନେବେ —ତାଙ୍କ ପଚଶ ହଜାରରେ ବବାହ କାର୍ଯ୍ୟ ଶେଷ ହେବଟି କ?

ବଣୀ ।—ନ ହେଲେ ଅଉ ଦେଖାଯିବ । ପୁଅ ବୋଲି ଗୋଟିଏ, ତହିଁରେ ପୁଣି ଲକ୍ଷପତିଙ୍କ ପୁଅ —ପଚଶ ହଜାର ଟଙ୍କା କିବା କଥା । ଯେଉଁଠି ସୀଉକାର ଅଣିବାରେ ହଜାରେ ଟଙ୍କା ହୁଡଗଲା ସେଠି ବଭାଖର୍ଚ୍ଚ କି ଉଣା ହୋଇପାରେ ?

ସଦା ।—ଏକା ଅଲଙ୍କାରଉ ଦଶହଜାର ଟଙ୍କା, ଅଉ ମହାଜନ ମିଠାଇଖିଆ ଅଢ଼େଇହଜାର ।

ବଣୀ ।—ବାଣ ଭୋଷନ ତନହଜାର ।

ରାମ ।—ବନାରସିବାଇ ନେବେ ଦେଢ଼ହଜାର—ଅଭିତ ଗ୍ରାମଠୁଁ କଟକଯାକେ ଯେତେ ଅଛନ୍ତି ।

ସଦା ।—ଯାହାହେଉ ବବାହର ଆଡ଼ମ୍ବରଉ ଉଣା ହେବ ନାହିଁ ।

କମ ।—( ଜିହ୍ୱା ଦଂଶନକରି ) ନା ନା ତାହା କି ହୋଇପାରେ ? ବିବାହକିଯ୍ୟାଟା ଏମନ୍ତ ହେବ ଯେମନ୍ତ କି ଚିରକାଳକୁ ନାମ ରହିବ ।—ଲୋକେ କହିବେ ହଁ ପଟ୍ଟନାୟକେ ପୁଅବାହାଟା କଲେ ଆଉ ପଟ୍ଟନାୟକେ କି ମନରେ ଜାଣିଯିବେ ପୁଅ ବାହାଘରଟା ହେଲା ।

ବଂଶୀ ।—ଯାହା ନ କରିବ ସେ ଦୁଃଖ ମନରେ ରହିଯିବ ।

ସଦା ।—ଠିକ କହୁଛ ବଂଶି । କମଳ, ବଂଶୀ ବଡ ଯୋଗ୍ୟଲୋକ —ତା ଯୋଗୁଁ ଆମ୍ଭର ଏଲ୍ଲକା ବାଡ଼ି ଚାଲୁଛି ସିନା । ସେ ବଡ ସାବଧାନ ଲୋକ—ବେଳ ପଡିଲେହାତରୁ ପଚି ଦଶ ପଚିଶ ଗଳିଦେବ ।

କମ ।—ତା ନ କରିବତ ଚାକରୀରେ ରହିବ କିପରି ? ଆଉ ଗୁମାସ୍ତା ମାନେ ନାହାନ୍ତି କି ମାତ୍ର ଏତେ ସହାନୁଭୂତି କାହାରଠାରେ ନାହିଁ । ବଂଶୀ କି ଖାଇ ପିଇ ମୋଟ ହେଲାଣି —ସେ ହେଡ଼-ଗୁମାସ୍ତା, ତାଙ୍କୁ ତିନି ଟଙ୍କାରୁ ଆଉ କିଛି ଅଧିକ ବେତନ କରିଦିଅ ।

ବଂଶୀ ।—( କରଯୋଡ଼ି ) ମୁନିବଙ୍କ ସ୍ନେହ ଥିଲେ ଭୃତ୍ୟ ଆନନ୍ଦରେ ଫୁଲିଉଠେ ।

ସଦା ।—ଠିକ କଥା । ଅଚ୍ଛା ତେବେ କାଲିସକାଳେ ମହାଜନଘରକୁ ଯିବା । ବର୍ତ୍ତମାନ ଯାଅ ।

[ ବଂଶୀଧର ଓ ନିଶାକରର ପ୍ରସ୍ଥାନ ।

କମ ।—ବେଳ ହୋଇଗଲା ।

ସଦା ।—( ହାଇମାରି ) ମୋର ପଦା ହାଇ ଉଠିଲାଣି । ଶୀଘ୍ର ହୋଇଆଣ । ( ପୁନର୍ବାର ହାଇମାରି ) ଆଜ ଦହିଟା ଅଧିକା ଖାଇବା ।

କମ ।—ଛିଟା ଯେତେ ଅଧିକ କରିବ ରୁଣ ତେତେ ଶୀଘ୍ର ପରିଶୋଧ

ପାଇଯିବ ।—ଗୋଟିଏ ଗୋଟିଏ ଛିଟାରେ ବ୍ରହ୍ମା ବିଷ୍ଣୁ ମହେଶ ତିନିଦେବତା ଅଛନ୍ତି ପରା ?

ସଦା ।—କିପରି ?

କମ ।—ବ୍ରହ୍ମା ଛିଟାକୁ ଗଢ଼ିଲେ ତାକୁ ଗଢିବା କେତେ ଛଟକ୍‌ଟର କଥା !

ସଦା ।—ଠିକ ଠିକ—ବ୍ରହ୍ମା ନ ଥିଲେ ଏତେ ବୁଦ୍ଧି କିଏ କାଢ଼ନ୍ତା ?—କାହିଁ ପିଜୁଳିପତ୍ର କାହିଁ ଅଫିମ !—ଆଉ ବିଷ୍ଣୁ ?

କମ ।—ବିଷ୍ଣୁ ସଂସାର-ସ୍ଥିତିର କାରଣ । ଯେତେବେଳଯାଏ ଛିଟା ଚିଲମ ଉପରେ ଥାଏ ତେତେବେଳଯାଏ ସଂସାର ବି ଭଲ ହୋଇଯାଏ ।—ତେତେବେଳେ ଛିଟାର ବିଷ୍ଣୁମୂର୍ତ୍ତି ।

ସଦା ।—ବାଃ ବାଃ ! କଥାଟି ଠିକ୍ ଘଟିଛି !—ଆଉ ମହେଶ ?

କମ ।—ମହେଶ ସଂହାରମୂର୍ତ୍ତି—ଛିଟାଟି ଠକ୍‌କରି ଚିଲମଉପରୁ ଅଗ୍ନି ମୟ ହୋଇ ପଡ଼ିଯାଏ—

ସଦା ।—ଆଉ ଜାହାଜ ବୁଡ଼ିଯାଏ ! ( ଉଚ୍ଚହାସ୍ୟ ) ହୋଃ ହୋଃ ହୋଃ ! !—ଚାଲ କୋଠରିକି ।

[ ଉଭୟଙ୍କର ପ୍ରସ୍ଥାନ ଓ ପଟ-ପରିବର୍ତ୍ତନ ।

---

ତୃତୀୟ ଦୃଶ୍ୟ । ଅନ୍ତଃପୁର ।

[ ବିଷ୍ଣୁପ୍ରିୟା ପର୍ଯ୍ୟଙ୍କୋପରି ଆସୀନା ଓ ଚନ୍ଦ୍ରମାଳୀ ପାର୍ଶ୍ୱେ ଦଣ୍ଡାୟମାନା । ]

ବିଷ୍ଣୁ ।—ମୋର କପାଳ ଭଲ ଯେ ଏମନ୍ତ ବୋହୂଟିଏ ପାଇବି ?

ଚନ୍ଦ୍ର ।— ବୋହୂତ ବୋହୂରେ ଯାଏ—ଗୋଟିଏ ଗୃହଲକ୍ଷ୍ମୀ ଘରେ ଘରୁ ହୋଇଚ ପରା ? ଠାଣିଠମକି ବାଛିବାକୁ କିଛି ନାହିଁ । ମୁଁ ନିଜେ ଦେଖି ଆସିଚି ।— ତାର ଲାବଣ୍ୟ ଯେପରି ମୁହଁଛିଟା ବି ସେପରି—ଯେମନ୍ତ କଇଁଫୁଲଟିଏ ପାଣିରେ ଢ଼ଳ ଢ଼ଳ ହେଉଚି !

ବିଷ୍ଣୁ ।— ଏ ପୁଅକୁ ବୋହୂ ଠିକ ହୋଇ ନାହିଁ ?

ଚନ୍ଦ୍ର ।— ଆହା ! ଗୁଣ ଯେଉଁ ଲୁଚିଯାଏ କହ — ଏକଥା ଆଉ ପଚାରିବାକୁ ଅଛି ! ପୁଅର ହାଙ୍ଗାର ଚନ୍ଦ୍ରମା — ତା ପାଇଁ ପରା ସେ କଇଁଫୁଲ ଫୁଟିଛି ।— ଊଣେଇଶବର୍ଷର ବରକୁ ତେର ବର୍ଷର କନ୍ୟା — ଠିକ ହୋଇଛି । ( ହସି ) ଆଉ ଯେ-ମିତି ଆମଗାଁ କଥିମାହାନ୍ତି ତା ଝିଅକୁ ବଭାଦେଲା — ବାଇଶ ବର୍ଷର ଝିଅଟା, ବାହାହୋଇଥିଲେ ଯାଉଟା ପିଲାଝିଲା ହୋଇ ଯାଉଥାନ୍ତାଣି ସେ ପୁଣି ବାହାହେଲା । କିଏ କହୁଚି ବରକୁ ବର୍ଷ ତେଇଶ କିଏ କହୁଛି ଊଣେଇଶ ।

ବିଷ୍ଣୁ ।— ତୁ ତୁଛ ନଥିଟା ଝିଅକୁ ଭସାଇଦେଲା !

ଚନ୍ଦ୍ର ।— ଆଉ ସେ କରବ କସ ? — ବର ଖୋଜୁ ଖୋଜୁ ତ ଝିଅଟା ପାହାଡ଼ ପର ବଢ଼ିଗଲା !— ଏକା ବରଘର ବେଶ ଆଦର କେଇଚ ।

ବିଷ୍ଣୁ ।— ନେବ ନାହିଁ ? ବୋହୂ କରବ କଣ ଧନକ ପାଇଁ ? ନଥିର ଦଶା ଏକା ଯାଉଦେଲା — ସେକ ପାଅାଁଶ ଟଙ୍କାର ମୃତ୍ୟୁ ?

ଚନ୍ଦ୍ର ।— ଭାଉ ଭଟାମାଟି ଉଚ୍ଛନ୍ନ ହୋଇଗଲା ପରା । ଗରିବଘର ଝିଅ ହେଲେତ ଏହିଦଶା । ଯାଙ୍କର ଅଛି ସେ ପାଞ୍ଚ ଯାଗାରେ ପଚାଶ ଦେଲେ ବାଧେ ନାହିଁ — ଆଉ ଯାର ନାହିଁ ତା କଥା ବୁଝୁଚି କିଏ ? — ଅଜ୍ଞ କାଲତ ଦାଣ୍ଡ ହୋଇ ପଲାଣି ବର କଉଡ଼ କ ପାଇଲେ ବାହା ହେବ ନାହିଁ ।

ବିଷ୍ଣୁ ।— ଚନ୍ଦ୍ର ! ଆଗେ କନ୍ୟା ନେଉଥିଲା ।

ଚନ୍ଦ୍ର ।— ନେଉଥିଲା ଯେମିତ ପାଞ୍ଚଖଣ୍ଡ ଫିକିକର ଅସୁଥିଲା ସେମିତ । —ବଇକେନଲାଠ୍ ନା ଦେବତା ନା ବ୍ରାହ୍ମଣ କାହିଁରେ ଲାଗିଲା ନାହିଁ ।— କଉଡ଼ ଖାଇଲା ପର ।

ବିଷ୍ଣୁ ।— ବୋହୂର ମା ସଙ୍ଗରେ ଦେଖା କଲୁ ?

ଚନ୍ଦ୍ର ।— ହଁ ବୋହୂ-ମା କେତେ ବାହୁନି କରି କାନ୍ଦିଲା । ବୋହୂଟି ବଡ଼ ବଡ଼ କରି କବାଟ କଣରେ ଅନାଇ ଥାଏ । ଯେତେ ଅଳଙ୍କାର ଗଢ଼ା ହୋଇଚି ବୋହୂ-ମା ସବୁ କାଢ଼ି କରି ଦେଖାଇଲେ । ଉତ୍ତମ ଅଳଙ୍କାର ଗୁଡ଼ାଏ ହୋଇଛି । ପେଡ଼ି ବାସନ ବି ସବୁ ଦେଖାଇଲେ — ଠିକଠୁ ସବୁ କରିଚନ୍ତି ।

ବନ୍ଧୁ ।— କରିବେ ନାହିଁ ? — ଝିଅ ବୋଲି ଗୋଟିଏ ତାଙ୍କୁ କି ଦେବେତ ରଖିବେ କାହାପାଇଁ ? — ତାଙ୍କର ଦେବା ନେବାରେ କ ଅଛି, ବୋହୂଟିର କପାଳ ଭଲ ହେଲେ ହେଲା ।

ଚନ୍ଦ୍ର ।— ବୋହୂତ ନୁହେ — ଲକ୍ଷ୍ମୀ । ଯେମନ୍ତ ରୂପ ତେମନ୍ତ ଗୁଣ । ବାହା ତଥ ଆଉ ଅଠଦିନ ରହିଲାପରି — ବାଇଦ ବସିବ କେବେ ?

ବନ୍ଧୁ ।— ବାଇଦ କାଲି ବସିବ — ମହାଜନପରୁ ଟଙ୍କା ଆସିଲେ ଯାଇଁ ବାଇଦ ବସିବ । ଆଗେ ହିନା ଘରେ ଟଙ୍କା ଥିଲା — ଏବେ ପର ଉପରେ । ଶ୍ୱଶୁର ସାଆନ୍ତେ ନିଜେ ବୁଝାସୁଝା କରୁଥିଲେ — ଖିମୁକିରଣମାନେ କରପତ୍ର ଯୋଡ଼ି ରହୁଥିଲେ । ଏବେତ ସାଆନ୍ତେ ସାଙ୍ଗ ନେଇ ରହିଲେ ନିଶାଖାଇ — ପୁରୁଣା ଖିମୁକିରଣମାନେ ଢଙ୍ଗ ଦେଖି ବାହାରିଗଲେ । ଆଉ ଯେ ନୂଆ ଅଛନ୍ତି ଦେଖୁଚୁତ ଦହାତରେ ଖାଇ ଯାଉଚନ୍ତି । କାଟବନ୍ଦୀ ଉପରେ କାଟବନ୍ଦୀ ଋଣ ହେଉଚି । କହୁତ ମାଗିଲା ବେଳକୁ ଖିମୁକିରଣେ କହୁଚନ୍ତି — ଢଳ ଧୋଇ ଗଲା, ବାଡ଼ି ଧୋଇଗଲା, ପ୍ରଜାଙ୍କଠାରୁ ପଇସାଟିଏତ ବାହାରିଲା ନାହିଁ । — ଏଥିରେ ମଣିଷ କରିବ କଅଣ ?

ଚନ୍ଦ୍ର ।— ସାଆନ୍ତେ କଣ ଯ୍ୟା ବୁଝୁ ନାହାନ୍ତି — ତୁମେ ଟିକିଏ ବୁଝେଇ କହୁନାହ ? — କହିଜାଣିଲେ କଥା ସୁନ୍ଦର — ବାନ୍ଧିଜାଣିଲେ ମଥା ସୁନ୍ଦର !

ବିଷ୍ଣୁ ।—ଇନ୍ଦ୍ରେ ଚନ୍ଦ୍ର ! ମୁଁ କି ବୁଝାଇବାକୁ ଖଣ୍ଡେଁ ?—ମୋତେ କହିବେ—ତୁମେ ମାଇପିନ୍ଲୋକ, ତୁମର ଏଥିରେ କି ଅଛି ! —ଦେଖ ? ( ବସ୍ତ୍ରାଞ୍ଚଳରେ ଆପଣାର ଲୁହ ପୋଛୁ ) ଦେଖି-ଛୁତ ନଡଆମାଦରେ ମଦ୍ଧାଜନ କାଳକନା ବୁଲେଇ ନେଇ ଗଲା—ମୋତେ ଅବା ତାହାପର ପେଟ୍ପାଇଁ ଦୁଆର ଦୁଆର ବୁଲିବାକୁ ନ ପଡବ ଯା କଏ କହିପାରେ ?

ଚନ୍ଦ୍ର ।—ଛି, ସାଆନ୍ତାଣି, ଅମଙ୍ଗଳକଥା କହ କାହିଁକି ! ଠାକୁରେ ଅଛନ୍ତି—ତୁମେତ ବିଲେଇ କୁକୁରଙ୍କୁ କଷ୍ଟ ଦେଇନାହିଁ ତୁମେ କାହିଁକି କଷ୍ଟ ପାଇବ ?—ସାଆନ୍ତେ ଯେବେ ନ ଶୁଣିବେ ତୁମେ କସ କରିବ ?—କହିବ କାହାକୁ ଶୁଣାଇ କେ —ସାଆନ୍ତ ଅବୁଝା ମାଡ଼ବ ଯେ । —( ହଠାତ୍ ଚମକପଡ଼ି କାନଡେର ) ଏ କିଏ ଆସୁଛ—( ନେପଥ୍ୟକୁ ଅନାଇ ) ସାଆନ୍ତେତ—( ପ୍ରସ୍ଥାନ । )

[ ସଦାନନ୍ଦର ପ୍ରବେଶ ।

ସଦା ।—( ବିଷ୍ଣୁପ୍ରିୟା ପାର୍ଶ୍ୱେ ପର୍ଯ୍ୟଙ୍କୋପର ଉପବେଶନ କରି ) ସ୍ୟେ କଣ ?—ପୁଅ ବାହାଘର—କାଲି ବାଇଦ ବସିବ—ଝିଅ ବାହାଘର ହୋଇଛି କି ଜାଣୁଛ ବସି ?

ବିଷ୍ଣୁ ।—( ଲୁହପୋଛିଦେଇ ସଜାଡହୋଇ ବସି ) ତୁମେତ ମୋତେ ଚିରକାଲ କାନ୍ଦିବାପାଇଁ ବାଟ ମେଲ୍କରି ରହିଛ—ମୁଁ ଏବେ ଦନେ କାନ୍ଦିଲତ କି ହେଲା ?

ସଦା ।—(ଆଶ୍ଚର୍ଯ୍ୟାନ୍ୱିତ ହୋଇ) ଚିରକାଲ କାନ୍ଦିବାର ବାଟ ମେଲାକ-ରିଛି ?—କପରି ?—ବୋହୁଟି କି ଅସୁନ୍ଦରୀ ?—ନା ପାଇଟିଆଳୀ ନୁହେ ?

ବିଷ୍ଣୁ ।—ତାର ଝାଡଝୁଡ ମୁଁ ନେଁ ? ତା କଥା ମୁଁ କହୁନାହିଁ ।—ତୁମେତ ଋଣ କରିକରି ଶୁଝିପାରିଲ ନାହିଁ—ପୁଣି ଯେ ଋଣ କରି-

ବାଲ୍ଲି ଯାଉଚ ତାଙ୍କୁ ଶୁଝିବ କପରେ ? ପୁଅ ବାହାଘରେ ଏତେ ଟଙ୍କା ଖର୍ଚ୍ଚ ନ କଲେ କ ଚଳିବ ନାହିଁ ?

ସଦା ।—କଣ ?—ଗୋଟିଏ ବୋଲି ପୁଅ—ସଦାନନ୍ଦ ପଟ୍ଟନାୟକ ଲକ୍ଷପତି ବୋଲି ଗୃହଅଛି ନାମ ବାଜି ଯାଇଛି—ତାର ପୁଅ ବାହାଘର କ ଯେମିତି ସେମିତି ହେବ ?—ପଞ୍ଚାଶହଜାର ଛଡ଼ି ଲକ୍ଷେଟଙ୍କା ହେଲେତ ମନକଲେ ଏକା ଦଣ୍ଡକେ ଶୁଝିଦେବି ! ମୋର ଜମିଦାରୀ ସୁନାରଥାଳି—ଏକା ତାହାର ମୂଲ୍ୟ ଦୁଇଲକ୍ଷ ଟଙ୍କାରୁ ଊଣା ନୁହେ—ତାହାଉପରେ ପୁଣି ଲାଖେରାଜ ବାଡ଼ିଅଛି । ଏହିକଥାକୁ ତୁମ୍ଭେ ଡ଼ରୁଛ ?

ବନ୍ଧୁ ।—ଏହିକଥାକୁ ଡରୁଚି ।—ସୁନାରଥାଳି ଜମିଦାରୀ ଅସି ବାଲ୍ଲି-କୁଦରୁ ହୀନ ହେଲାଣି । ଆଗେ ଗ୍ରାମୁକାଇଣମାନେ ଶାଗକେ-ରଏ ମାଛଟାଏ ଯେତେବେଳେ ତେତେବେଳେ ଆଣି ପହଞ୍ଚାଉଥିଲେ—ଏବେ ଥାଉ ସେ ସବୁକଥା ନାଟବନ୍ଦୀଖଜଣା ତୁମେ ହାତକୁ ପଟଉଚ । ମହାଜନ ଘରକର ନାଟବନ୍ଦୀ କରିବା ଶ୍ୱଶୁର ସାଆନ୍ତଙ୍କ କାଳରେ ତ ଦିନେ ଦେଖା ନ ଥିଲା । ଗୋଟାଏଁ ନାଟବନ୍ଦୀକ ଯାହା ଅଦୁଥିଲା ସେ ନାଟବନ୍ଦୀ ଯାଇଁ ଆଉ ନାଟବିନ୍ଦୀର ଟଙ୍କା ରଖିଦେଇ ବର୍ଷଯାକ ଖାଇବାର ସବୁ ନ ଥିଲା ।—ନାଟବନ୍ଦୀ ଅସୁଚ ବୋଲି ଗ୍ରାତ ଉଲ୍ଲାସରେ କୁଣ୍ଡେ-ଘେଟ ହୋଇ ଯାଉଥିଲା—ଏବେ ନାଟବନ୍ଦୀ ଅସୁଚ ବୋଲି ତରଛରେ ଛାତି ପାଣି ହୋଇ ଯାଉଚ ।

ସଦା ।—ତୁମ୍ଭେ ମାଇପେଲୋକ—ଏ ସବୁକଥା କଣ ବୁଝିବ ? ବାପାଙ୍କ କାଳରେ ଚାଉଳ ଶସ୍ତା ଥିଲା, ଘିଅ ଶସ୍ତା ଥିଲା, ସବୁ ଶସ୍ତା ଥିଲା —ମେଘବ ବର୍ଷୁଥିଲା, ଲୋକେବ ସୁଖରେ ଥିଲେ ।—ଏବେ ମେଘ ବର୍ଷିବାକୁ ନାହିଁ ନା ଅକାଳ ଛାଡ଼ିବାକୁ ନାହିଁ—ଏଥିରେ ଲୋକ କରବ କଣ କହିଲ ?

ବସ୍ତୁ ।—ଶ୍ୱଶୁରଙ୍କ କାଳରେ ସବୁ ଶସ୍ତା ଥିଲା—ସେ ବି ଧର୍ମରେ ଥିଲେ —ନଶାପାଖକୁ ପଶୁ ନ ଥିଲେ—

ସଦା ।—( ଇଷତ୍ କ୍ରୋଧରେ ବସ୍ତୁପ୍ରିୟ୍ଙ୍କର ହାତଧରି ) ଯେବେ ଆସିଲ ଏଥରୁ ସେଅତ୍ କଥା ପକାଉ ପକାଉ ସେହି ନଶା-କଥା ଟୋକିଲ !

ବସ୍ତୁ ।—ଟୋକିବ ନାହିଁ ? ମୋତେ ବାଧିତ ବୋଲି କହୁଛ । ମୋର ସ୍ୱାମୀ ଭଲ ଥିଲେ ବୋଲି ମୋର ଖିଆ କେତେ ଦମ୍ଭ ଦେଖାଇ-ଥିଲା—କେତେ ଗର୍ବରେ ମୁଣ୍ଡ ଆକାଶକୁ ଟେକିଥିଲି ଯେ ମୋ ପରି ସୁଖୀ ଆଉ ସଂସାରରେ କେହି ନାହିଁ ! କଉଁଠି ଏ ଅଲକ୍ଷଣା ସାଙ୍ଗ ଗୁଡ଼ାକ ଥିଲେ—ମୋର ଚନ୍ଦ୍ରମାରେ କଳଙ୍କ ଲଗାଇଲେ ? ଯେଉଁ ଦିନଠୁ ସେମାନେ ଆସିଲେଣି ସେହି ଦିନଠୁ ମୋତେ ଲକ୍ଷ୍ମୀ ଛାଡ଼ି ଯାଉଛନ୍ତି—ସେହି ଦିନଠୁ ମୋର ଶାନ୍ତି ଭୁଟି ଯାଉଛି !

ସଦା ।—ଆଃ ଏତେ କଥାରେ କଣ ଅଛି—ବର୍ଷ ଗୋଟାକ ଭିତରେ ଯେବେ ମୁଁ ଋଣ ସବୁ ଶୁଝି ନ ଦେବି ମୋତେ କହିବ ।

ବସ୍ତୁ ।—ତୁମ ମୁହଁରେ ଫୁଲ ଚନ୍ଦନ ପଡୁ—ଠାକୁରେ ତୁମକୁ ସାହା ହୁଅନ୍ତୁ !—ତୁମେ କି ବୁଝି ପାରୁ ନାହଁ ? ତୁମେତ ଆଗର ଋଣ ଶୁଝି ନାହଁ—ଏ ଋଣ ଶୁଝିବ କେମିତି ? ଯେବେ ଧର୍ମ-ଛଡ଼ା ନଶାଖିଆ କଥାଟି ନୋହିଥାନ୍ତା ତେବେ ଜାଣି ପାରନ୍ତି ଯେ ତୁମ କଥାରେ ହିତ ଅଛି ।—କରମ ପଡ଼ିଲେ ଧରମ ଛାଡ଼େ—ସରମ କଥାରେ ମରମ ସଢ଼େ । ତୁମେ ଯେବେ ସାଙ୍ଗ ମାନଙ୍କୁ ଛାଡ଼ି ଅଧୀ ହୋଇ ରହନ୍ତ ତେବେ ଖର୍ଚ୍ଚ ବି ଊଣା ହୁଅନ୍ତା, ବଳି ବାଡ଼ିବ ଦେଖିବାକୁ ପାରନ୍ତ, ଜମିଦାରୀ ବୁଝିବାକୁ ବେଳ ଖଟନ୍ତା, ଚାକର ବାକରମାନେ ବି ଡରନ୍ତେ—ଆଉ ସମୟ ଅସମୟରେ ଋଣ କଲେ ଶୋଭାପାନ୍ତା ।

ସଦା ।—( ଈଷତ୍ କୋପାନ୍ୱିତ ହୋଇ ) ମୁଁ ନିଶା ଖାଇଲି ବୋଲି ସବୁ ମନ୍ଦ ହୋଇଗଲା । ମୋଠୁ ବଳି କେତେ ଲୋକ କେତେ ନିଶା ଖାଉଛନ୍ତି—କିବା ନିଶା ମୁଁ ଖାଉଛି ଯେ ତୁମ୍ଭେ ଏତେ କନ୍ଦାକଟା କରି ଘର ଭସାଇ ଦେଉଛ ?—ମୁଁ ନିଶା ଛାଡ଼ିବି ନାହିଁ କି ସଙ୍ଗ ଛାଡ଼ିବି ନାହିଁ !

କଷ୍ଟୁ ।—( କାନ୍ଦରେ ଲୁହ ପୋଛି ) ମୁଁ ତ ତା ଜାଣେ ତୁମେ ନିଶାର ଯେତେ ବଶ ହୋଇଛ ତୁମେ ନିଶା ଛାଡ଼ି ପାରିବ ନାହିଁ କି ସାଙ୍ଗ ଛାଡ଼ି ପାରିବ ନାହିଁ । ସଙ୍ଗୀମାନେବି—ତାଙ୍କର ତ ହୁଇ ପଇସାର ଉପାୟ ନାହିଁ, ତୁମକୁ ଛାଡ଼ିଲେ ନିଶା ବିନା ମରିବେ—ତୁମକୁ ଆହୁରି ଡେଜୁଥିବେ ।—( ଦୀର୍ଘ ନିଃଶ୍ୱାସ ପକାଇ ) ହଁ—ଦଇବ ଦଉଡ଼ି ମନିଷ ଗାଈ ଯେଣିକି ଓ-ଟାରେ ତେଣିକି ଯାଇ ! ମୁଁ ଜାଣିଲି ଯେ ଦଇବ ଆମକୁ ଛାଡ଼ି-ଲାଣି—ନୋହିଲେ କି ତୁମର ଏପରି ବୁଦ୍ଧି ହୋଇଥାନ୍ତା ! —ମୋ କଥା ତୁମେ ମାନ—ଆମେ ଲକ୍ଷପତି ହେଲେ ଆମ ଘରେ, ଦୁଃଖୀ ହେଲେ ଆମ ଘରେ । ପର କଥାରେ କିସ ମିଳିବ ? ହାତେ ମାପି ଗୃହଖଣ୍ଡେ ଗୃହିଲେ ନିଚିନ୍ତ ହୋଇ ରହିବା ସିନା ?—ଘରେତ ଧନ ନାହିଁ, ବାହାରକୁ ହଲେଇ ହେଲେ କି ହେବ ? ଯେମିତି ତେମିତି ବାହାଘର କାମ ନେଲେ ହେଲା । ଉମ ଉମାଳ ହେଲେ କେତେ ନୋହିଲେ କେତେ ? ଆପେ ଯେମିତି ସୁଖରେ ରହିବ, ପୁଅ ବୋହୂ ଯେମିତି ମୁଠାଏ ଖାଇ ପିଇ ଚିରକାଳ ଘର କରିବେ ତେମିତି ବ୍ୟବସ୍ଥା କର । ପର କଥାରେ ପଡ଼ି ଧନପ୍ରାଣରେ ମରିବ ଆଉ କିଛି ନାହିଁ ମା ପରି ଦିନ ବିପଦରେ ମୋ ହାତରେ ଖପରା ଧରିବାକୁ କରିବ ! ( ହଠାତ୍ ପଲଙ୍କରୁ ଖସି ପଡ଼ି ଗୋଡ଼ ଧରି କାନ୍ଦୁ ) ମୁଁ ତୁମର ଗୋଡ଼ ଧରୁଚି—ତୁମେ ତ୍ୟଣ କର ନାହିଁ—ମୋତେ ରକ୍ଷା କର ।

ସଦା ।—( କ୍ରୋଧଭରରେ ପଲଙ୍କରୁ ଖସି ପଡ଼ି ) ତୁମେ ମୋର ନାମ ବୁଡ଼ାଇବାକୁ ବସିଛ—ମୋର କୀର୍ତ୍ତି ଲୋପ କରିବାକୁ ବସିଛ! —ତୁମ୍ଭ ପାଖରେ ରହିବାର ନୁହେ—ଯାଅ ( ବେଗରେ ଗୋଡ଼ ଛଡ଼ାଇ ନେଇ ପ୍ରସ୍ଥାନ ) ।

ବିଷ୍ଣୁ ।—( କେତେ ଦୂର ଓଟାରି ହୋଇ ଯାଇ ଭୂତଳେ ପଡ଼ି ) ମାଲୋ ! ମୋ ଦଶା କି ହେବ ! ( ଅଚେତନ । )

[ ବେଗେ ଜଳପାତ୍ର ହସ୍ତେ ଚନ୍ଦ୍ରମାଳୀର ପ୍ରବେଶ ।

ଚନ୍ଦ୍ର ।—( ବିଷ୍ଣୁପ୍ରିୟାର ମସ୍ତକ କ୍ରୋଡ଼ରେ ରଖି କରି ମୁଖରେ ଜଳ ସିଞ୍ଚନ ପୂର୍ବକ ଚେତନ କରାଇ ) ଦଇବ ବାମରେ ବୁଦ୍ଧି ଯାଏ ନାଶ—ଶୁଣିବାକୁ ହୁଏ ନୀଚ ପରିହାସ । ଗୃହ ସାଆନ୍ତାଣି, ତୁମରିତ କରମ ମନ୍ଦ, କହିବ କାହାକୁ ?

ବିଷ୍ଣୁ ।—( ଉଠି ବସି ଦୀର୍ଘ ନିଃଶ୍ୱାସ ପକାଇ ) ହଁ ଲୋ ଚନ୍ଦ୍ର, ଗୃହ —ପାଇଛି ଆଇଛି ସବୁ ପଡ଼ି ରହିଲା । ( ଧୀରେ୨ ଉଠି ଚନ୍ଦ୍ରମାଳୀର କାନ୍ଧରେ ହାତ ଦେଇ ଗମନ । )

[ ବିଷ୍ଣୁପ୍ରିୟା ଓ ଚନ୍ଦ୍ରମାଳୀର ପ୍ରସ୍ଥାନ ଓ ଅଦୃଷ୍ଟ କୁମାରୀମାନଙ୍କର ପ୍ରବେଶ ଓ ନୃତ୍ୟ ଗୀତ ।

ଗୀତ ।

ରାଗିଣୀ ଝିଞ୍ଜିଟି । ତାଳ ଖେମଟା ।

ଦେଖ ସଂସାରେ ଲାଗିଛି କିତ ଏସନ କାଣ୍ଡ ।
ବିନାଶ କାଳେ ବୁଦ୍ଧି ବିପରୀତ । ଘୋଷା ।
ସଙ୍ଗ କୁସଙ୍ଗ, ନଶାକୁ ନଶା,
ଜ୍ଞାନ ହଜନ୍ତି ହଜନ୍ତି ଧନ ମାନ ମହତ୍ତ୍ୱ । ୧ ।
ଅଳସ କଲେ, ଲକ୍ଷ୍ମୀ ଛାଡ଼ନ୍ତି,
ପ୍ରିୟା ଉପଦେଶ ଦେଇ ପାଏ ପଦ ଆଘାତ ।
ଉଚିତ ଏହାକୁ ସିନା ବଜ୍ରାଘାତ । ୨ ।

ଯବନିକା ପତନ ।

---

# ଦ୍ୱିତୀୟ ଅଭିନୟ ।

ପ୍ରଥମଦୃଶ୍ୟ । ଦୋକାନଘର ।

[ କାନରେ ଗାମୁଛା ପକାଇ ମଇଳାତକିଆ ଆଉଜିକବସି ମଳନବ- ସନରେ ଧନପତି ଘନ ଘନ ଭଗଡର ଧୂମ୍ରପାନ ଓ ସମ୍ମୁଖେ ଗୁମାସ୍ତାକରଣମାନଙ୍କର ହେସାବ ବହି ଲେଖନ । ]

ଧନ ।—କ ହେସାବ ଠିକ ହେଲା ? ମୁଁ ତ ଏପରି ଗୁମାସ୍ତାକରଣ ଦେଖି ନାହିଁ । ଏତିକି ସାମାନ୍ୟ ହେସାବ ଠିକ କରିବାକୁ କଣ ମାସେ ଲାଗିବ କ ?

୧ଗୁମା ।—ହଁ ଠିକହେଲା । ହଜୁର ସେ ଯେ ଚକ୍ରବୃଦ୍ଧି ସୁଦ— ତାର ହେସାବ କରିବାତ ସହଜ କଥା ନୁହେ ।

ଧନ ।—ହଁ ହଁ ସେଥିରେ ଟିକିଏ ଅଡୁଆ ଅଛି—ମାତ୍ର ଥିଲେ କ ହେଲା ?—ଯେତେ ସହଜରେ ଟଙ୍କା ଆସେ ତେତେ ସହଜରେ ହେସାବ ନୋହିବ କାହିଁକି ?

୧ଗୁମା ।—ହଜୁର ଟଙ୍କାଟା ସହଜରେ ଆସେ ସତ, ହେସାବ କରିବାକୁ ତ ବେଳ ଲାଗିବ ।

ଧନ ।—ଗୁମାସ୍ତାକରଣେ ! ମୋତେ ଆଉ ସେ କଥା କହିଦେବାକୁ ହେବ ନାହିଁ । ଚକ୍ରବୃଦ୍ଧିରେ ଟଙ୍କାଟା ଅଧିକ ମିଳେ । ସେ ଟଙ୍କା ଗଣିବାକୁ ଯେତେବେଳ ଲାଗେ ହେସାବ କରିବାକୁତ ତେତେବେଳ ଲାଗେ ନାହିଁ । ଚକ୍ରବୃଦ୍ଧିରେ ସୁଦର ଟଙ୍କା ଭାରିମିଠା ।—( ପାଟିରୁ ଲାଳ ବୋହିପଡ଼ନ୍ତେ ଗାମୁଛାରେ ପୋଛି ) ତାର ହିସାବ କରିବା ମଧ୍ୟ ତେମନ୍ତ ମିଠା । ଧ୍ୟାନ ଗୃହିଁ—ସବୁବେଳେ ସେହି କଥାରେ ଧ୍ୟାନ ଥିଲେ କେବେ ଭୁଲ ହେବ ନାହିଁ ।—ତୁମ୍ଭେମାନେତ ଦେଖିଥିବ ତୁମ୍ଭେ

ଖତରେ ଲେଖି ହେସାବ କରୁ କରୁ ମୁ ଭୁଣ୍ଡେ ଭୁଣ୍ଡେ ହେସାବ କର ରଖିଥାଏଁ—କେବେ କ ମୋର ଭୁଲ୍ ହୋଇଛି ?

୧ଶମ୍ଭୁ ।—( ଜିହ୍ଵା ଦଂଶନ କର ) ଦେବଲ୍ଲୁ ଏହା କହିବା ! ଟଙ୍କା କଉଡ଼ରେ ଆପଣଙ୍କର ଭୁଲ ହେବ ! ଓଲଟା ବେଳେ ଚନ୍ଦ୍ରଗୁପ୍ତର ପାଞ୍ଜିରେ ଭୁଲ ହୋଇପାରେ ମାତ୍ର ଆପଣଙ୍କର କଡ଼ାଏ ଭୁଲ ହେବ ନାହିଁ ।

ଧନ ।— ଶମ୍ଭୁନରଣେ ! ମୋର କଡ଼ାଏ ଯେଉଁଦନ ଭୁଲ ହେବ ସେହଦନ ଲକ୍ଷ୍ମୀ ଛାଡ଼ିଯିବେ । ମହାଜନୀ ବ୍ୟବସାୟର ମୂଳମନ୍ତ୍ର—କଡ଼ାଏ ହୁଡ଼ିବ ନାହିଁ କ କଡ଼ାଏ ଛାଡବ ନାହିଁ । ତୁମ୍ଭେମାନେତ ମୋ ନକଟରେ ପନ୍ଦରବର୍ଷ ଚାକରୀକଲ କେବେ ଦେଖିଛ, କହିଲ, ମୁ କଡ଼ାଏ ଛାଡ଼ିଛି କ କଡ଼ାଏ ହୁଡଛି ?

୧ଶମ୍ଭୁ ।—( ଚକ୍ଷୁ ହସ୍ତଦ୍ଵାରା ସ୍ପର୍ଶ କର ) ମୁ ହଅଖି ଖୋଇଁ କହୁଛି ଏହାତ ଦନେ ଦେଖା ନାହିଁ । ସାଧୁଆମା ଗଣ୍ଡିର ଅଧପାହୁଲା ଭୁଲ ପଡଲା ବୋଲି ଅଖିଆ ଅପିଆ ତନପ୍ରହର ଯାଏଁ ବହିଲୁଁ—ସଣ୍ଡୀ ବେଳା ହକ ଦେଢ଼ପାହୁଲାଟି ଚଦେଲା ତେବେ ହଜୁର ଖାଇବାକୁ ଗଲେ ଆଉ ଆମ୍ଭେମାନେ ବ ଖାଇବାକୁ ଗଲୁଁ ।

ଧନ ।—( ହର୍ଷୋତ୍ଫୁଲ୍ଲ ଲୋଚନରେ ) ଆଉ ସେ ନଧି ସେଠି ?

୧ଶମ୍ଭୁ ।—( ଈଷତହାସ୍ୟ ) ହୋଃ ହୋଃ !! ହଜୁରଙ୍କର ଖୁବ ମନେ ଅଛି । ସେଟା ମାଇପହାତର ଖଡୁ ବନ୍ଧ ଦଶପଇସା ଦେଲା, ନଅଣ୍ଟ ହେଲାକୁ ଗାମୁଛି ବକ ଦୁଇପାହୁଲା ଅଣିଲା, ବାକୀ ଅଧପାହୁଲା ପାଇଁ କାନ୍ଦକାଟି ଗୁଡ଼ିଆ ଦୋକାନରେ ମାଇପକୁ ବସାଇ ଅଣି ଦେଲା—ତେବେ ଯାଇଁ ରକ୍ଷା ପାଇଲା ନୋହିଲେତ ସର-କାରୀ ପିଅଦା ବାନ୍ଧକର ମାମୁଘରକୁ ନେଇ ଯାଇଥାନ୍ତା ।

୨ଶ୍ୟା ।—ଏକା ତା ଭାର୍ଯ୍ୟାଟି ସେହି ଦୁଃଖରେ ଗର୍ଭରେ ବେଙ୍କରେ ଦଉଡ଼ ଦେଇ ମଲା—କେଡ଼େ ସୁନ୍ଦରୀ ସ୍ତ୍ରୀଲୋକ ! ନାଥିଅତ ସେହିଦିନରୁ ବାୟା ହୋଇ ବୁଲୁଛି ।

ଧନ ।—ହେଲା—ମୋର ଟଙ୍କାତ କଡ଼ାଗଣ୍ଡା ହୋଇ ଅଦାୟ ହେଲା ! ତା କର୍ମ ଦୋଷ ସେ ବାୟା ହେଲା ବା ତା ମାଇପ ବେଙ୍କରେ ଦଉଡ଼ିଦେଇ ମଲାତ ମୋର କ ଗଲା? ମୋର କଣ ଆଉ ଖାତକ ନାହାନ୍ତି ?—ଟଙ୍କାଥିଲେ କେତେ ଖାତକ ଅସିବେ । ସେ ଦୁଃଖ ପାଇଲା ବୋଲି କ ମହାଜନ ଟଙ୍କା ଛଡ଼ିଦେବ ? କର୍ଜକଲା କାହିଁକ ? ଚୁକ୍ତିକଲା କାହିଁକ ? ତମସୁକ ଲେଖିଦେଲା ବେଳକୁ ହାତ କଣ ସଜହଲ ହେଉଥିଲା ? ଟଙ୍କା ନେଲାବେଳେ କେତେ ନେହୁରା, ଆଉ ଦେଲାବେଳକୁ ଆଁକର ବସିଲେ ମହାଜନ ଛଡ଼ିଦେବ ପରା !—ମୁ ଜଗିଛି ବୋଲି ମୋଘରେ ଲକ୍ଷ୍ମୀ ଅଛନ୍ତି !

୨ଶ୍ୟାମୁ ।—ହଜୁର ବରାବର ଯକ୍ଷପରି ଜଗିଛନ୍ତି ।

ଧନ ।—( ଆନନ୍ଦରେ ସଜାଡ଼ି ହୋଇ ବସି ) ଅଚ୍ଛା, ହେସାବ କେତେ ହେଲା ?

୨ଶ୍ୟାମୁ ।—ଉଣାନବେ ଲକ୍ଷ ସତାନବେ ହଜାର ତନ ଟଙ୍କା ସାତ ଅଣା ପାଞ୍ଚ ପାହି ଦ ପା ।

ଧନ ।—( ଶ୍ୟାମୁକରଣ ହାତରୁ ବହି ନେଇ କଣ୍ଠଭୂଷଣ ଦେଖି ) ହଁ ଠିକ ହୋଇଛି । ( ସେ ବହି ଥୋଇ ଦେଇ ସମ୍ମୁଖରୁ ଆଉ ଖଣ୍ଡିଏ ବହି ନେଇ ତହିଁରେ ଲେଖି ) ଶ୍ୟାମୁକରଣେ ! କୋଟିଏ ଟଙ୍କା ନୋହିବା ଯାକେ ମୋତେ ଘରେ ନିଦ ହେଉ ନାହିଁ କ ଭାତ ରୁଚୁ ନାହିଁ । ଆଉ ଉଣା ଅଛି ଦଶଲକ୍ଷ ଦୁଇ ହଜାର ନଅଶ ଛୟାନବେ ଟଙ୍କା ଆଠ ଅଣା ଛ ପାହି ଦ ପା ।

୨ଶ୍ୟାମୁ ।—ଆଉ ଛ ମାସ ମଧ୍ୟରେ ହୋଇଯିବ ।

ଧନ ।—ଠିକ କହୁଛ ଆଉ ଛ ମାସ । ମୋ ଅଜାଙ୍କ ଅମଳରେ ଗୋଟିଏ ଟଙ୍କା ନ ଥିଲା—ବାପେ କରଗଲେ ଲକ୍ଷେ—ମୋ ଦେହକେ ହେବ କୋଟିଏ !

ଝୁମ୍ପୁ ।—କୋଟିଏ ହେଲେ ଯାଇଁ ହଜୁର ଟିକଏ ନିଶ୍ଚିନ୍ତ ହୋଇ ଖାଇବେ ଶୋଇବେ ।

ଧନ ।—ମୂର୍ଖ କରଣେ ! ତୁମ୍ଭେ ବୁଝି ନାହଁ—କୋଟିଏ ହେଲେ ପୁଣି ଆଉ କୋଟିକ ପାଇଁ ଚିନ୍ତା ଲାଗିବ । ଖାଇବା ଶୋଇବା ମୋର ଏତିକି—ଟଙ୍କା ପାଇଁ ମୁଁ ଖାଇବା ଶୋଇବା ସବୁ ବିସର୍ଜନ ଦେଇଛି ।

[ ଜନୈକ ସାଧୁର ପ୍ରବେଶ ।

ସାଧୁ ।—ହରେ ରାମ ! ( ହସ୍ତୋତ୍ତୋଳନ ପୂର୍ବକ ) ଜୟ ରହେ ! ସେଠ୍‌ଜିକା ଉମର ଦରାଜ ହୋଏ ! ସୋନେକା ମୋକାନ ହୋଏ ! ଲଡ଼କା କବାଲା ସବକୋଇକୁ ଠାକୁର ଖୁସ୍ ରଖେ ! —ବାବା ସେଠଜି ! କଲ୍‌ସେ ହାମ ଭୁଁଖା ହେଁ—କୁଛ ଖାନେକା ବାସ୍ତେ ଦେଓ !

ଧନ ।—ହିଁଆ କୁଛ୍ ନେହି ମିଲେଗା—ଦୋସରା ଜଗା ଦେଖୋ ନେହିତ ଧର୍ମଶାଲାକୁ ଯାଓ ।

ସାଧୁ ।—ବାବା ହାମ ବହୁତ ଦୂରସେ ଆତା ହେଁ—ଦେର ହୋନେସେ ଧର୍ମଶାଲାବାଲା ବୋଲା ସବ ଆଖର ହୋଗିଆ ନେହି ମିଲେଗା—ଓତ ସବ ଖା ଯାତେହେଁ ! ଆପ୍‌କା ନାମ ଶୁନ୍‌କେ ଦୌଡ଼ା—ଅପ୍ ଏକ ଦଫେ ପେଟଭରକେ ଖାନେ ଦିଜିୟେ !

ଧନ ।—( ବିରକ୍ତ ହୋଇ ) ହିଁଆ କୁଛ୍ ନେହି ମିଲେଗା ।

ସାଧୁ ।—ଅରେ ବାବା ପାଓଭର ଆଟା ହୋନେସେ ହୋ ଯାଏଗା—ବେଶି ନେହି ।

ଧନ ।—ପାଓଭର ଆଟା ଛୋଡ଼କେ ମୁଠିଭର ଚାଉଲଭି ନେହି ମିଲେଗା ।

ସାଧୁ ।—କ୍ୟା ! ଏତ୍ନା ବଡା ସେଠ୍ ହୋକେ ମୂଠିଭର୍‌ବ ଗ୍ଦୌଲ ଦେତା ନେହି !! ଅଚ୍ଛା ତ ଏକଠୋ ପଇସା ଦେଓ—ହାମ୍ ଜଗନ୍ନାଥଜୀକୁ ଡକାକେ କହତା ହୌ କଲ୍ ସତକୁ ବର୍ଷାରୁ ହୁଆ କୁଛ୍ ନେହି ଖାନେ ପାୟା—ଔର ଅଜ କେହିଁ କୁଛ୍ ନେହି ମିଲ୍‌ନେସେ ଭେତରେ ପାଣ ଦୌଡ଼ନେ ଆତା ହୌ ।

ଧନ ।—ଏକଠୋ ପଇସା ଝୋଡ଼ନେ ଏକଠୋ କଉଡ଼ିଭି ନେହି ।

ସାଧୁ ।—ଏକ କଉଡ଼ିଭି ନେହି ?—ତେରା ଦୟା ଧରମ କୁଛ୍ ନେହି ! ଏତ୍ନା ବଡା ସେଠ୍—ଲାଖ୍ ଲାଖ୍ ରୋପେୟା ଜମା କିୟା ହେ ଭୁଁଜ୍ନା ସାଧୁକା ବାସ୍ତେ ଏକଠୋ କଉଡ଼ି ନେହି । ଠାକୁର ତେରେକୁ ଉମର ଦିୟା ଦେ । ହାମାର ଲେଙ୍ଗୁଟି ସେ ତେରା କପ୍‌ଡା ମୟଲା ହେ—ଔର ଚକଅଭି ହୁଟ୍‌ସେଭି ମଇଲା—ଏସବ୍ ଦେଖନେ ହାମ୍ ଆଗେସେ ଏସେହି ଖେୟାଲ କିୟାଥା ।—ତେରା ବାପ୍‌ଭି ଏକ କଉଡ଼ି ଖୟରାତ ନେହି କିୟା—ତେଁ ଲ୍‌ସିକା ଲଡ଼କା !

ଧନ ।—(କ୍ରୋଧଭରେ) ତୁମ୍ ଯାତାହେ ନା ଧକ୍କା ଖାଏଗା ।

ସାଧୁ ।—ନେହି ସେଠ୍‌ଜି ଖଫା ମତ୍ ହୋ ! ହାମ୍ ଯାତାହୌ—ଠାକୁରକା ମର୍ଜି ହୋଗା ତ କେହିଁ କୁଛ୍ ମିଲ୍ ଯାଏଗା ।—ଔର ନେହି କୁଛ୍ ମିଲେଗାତ ହାମ୍ ଖାନା ବଗଏର ମରେଗା ତେଁଭି ଏତ୍ନା ଧନ୍ ଦଉଲତ ରଖ୍‌କେ ନେହିଁ ଖାଖାକେ ମରେଗା । (ପ୍ରସ୍ଥାନ ।)

୧ଶ୍ରମୁ ।—ଏ ସାଧୁଗୁଡ଼ାଙ୍କର ମୁହଁ ଭାରି ଟାଣ ।

୨ଶ୍ରମୁ ।—(୧ଶ୍ରମୁକ୍‌ର ଣ କାନରେ) ଯାହା କହିଗଲା ଠିକ ନୁହେ କି ?

୧ଶ୍ରାମୁ ।—(୨ଶ୍ରାମୁକରଣ କାନରେ) ଚୁପ୍ ଚୁପ୍ ।

[ ଜନୈକ କାବୁଲୀର ପ୍ରବେଶ ।

କାବୁ ।—( ହାତ ଉଠାଇ ) ସଲାମ ସେଠ୍‌ଜି ! କୁଛ ସାଲ କାଶ୍ମୀରୀ ଓଗଏରା ଲେଙ୍ଗେ ? ଜାଡ଼ା ଅଛା ହୋଗୟା !

ଧନ ।—ନେହି ହାମାରା କୁଛ ଦରକାର ନେହି । ହାମ୍‌କୋ ଗରମ ବରଦାସ୍ତ ହୋତା ନେହି—ଏକଠୋ ଚଦରଭୀ ବଦନ୍‌ମେ ରଖ୍‌ନେ ନେହି ଶକ୍‌ତାହେଁ ।

କାବୁ ।—ଖୋଦା କସମ ଆପ୍‌କୁ ଦେଖ୍‌ପେୟାକା ଗର୍ମି ଲଗାଚହ !—ଜାଡ଼ା କ୍ୟା ଥୋଡ଼େମେ ଆପ୍‌କୁ ଥଣ୍ଡା କରେଗା ? ହାମ୍‌ତୋ ନାମ ଶୁନ୍‌କେ ଆୟାଥା—ଲେକିନ୍ ଚେହେରା ଦେଖ୍‌କେ ଥଣ୍ଡା ହୋଗିୟା ।—ଯାତାହେଁ—ସଲାମ ।

[ କାବୁଲୀର ପ୍ରସ୍ଥାନ ।

୨ଶ୍ମଶ୍ରୁ ।—(୧ଶ୍ମଶ୍ରୁକରଣ କାନରେ) ସେଦିନ ରାଜାଙ୍କ ଶ୍ମଶ୍ରୁରୁ ଯୋଡ଼ାଏ ସାଲ ପାଇଥିଲେ ଯେ ତାକୁ ବିକକର ମହାଜନୀରେ ଲଗାଇ-ଛନ୍ତି—ସେ ପୁଣି ସାଲ କିଣିବେ !

୧ଶ୍ମଶ୍ରୁ ।—( ୨ଶ୍ମଶ୍ରୁକରଣ କାନରେ ) ତୋର କଣ ପାଟି ଥୟ ହେଉ ନାହିଁ ?—ଚୁପ ହ ।

[ ବନାରସୀ ବାଈ ଓ ତତ୍ସଙ୍ଗୀବର୍ଗ ପ୍ରବେଶ ।

ବାଈ ଓ ସଙ୍ଗୀ ।—( ହାତ ଉଠାଇ ) ସଲାମ !

ଧନ ।—( ହାତ ଉଠାଇ ) ସଲାମ ! ହିୟାଁ କ୍ୟା ହେ ?

ବାଈ ।—ଆଏହେଁ ଆପ୍‌କା ନାମ ଶୁନ୍‌କେ—ହୁକୁମ ହୋଗାତୋ ଦୋ ଗୀତ ଚଜ୍ ଶୁନାଙ୍ଗେ ।

ଧନ ।—( ସାଶ୍ଚର୍ଯ୍ୟ ) ହାମ୍‌କୋ ଶୁନାଓଗେ ?

ବାଈ ।—ସେଠ୍‌ଜି ନେହି ଶୁନେଙ୍ଗେତୋ ଅଉର କୋନ୍ ଶୁନେଗା ?

ଧନ ।—ହାମକୋ ଶୁନାଓଗେ ?—ହାମ୍‌କୋ ଗାନା ଓନା ଅଛା ନେହି ଲଗତାହେ । ହାମ୍ ଓ ସବ୍ ସମଝ୍‌ନେ ନେହି ସକ୍‌ତାହେଁ ।

ହାମ ଖେୟାଲ କିୟାଥା ଆପଲୋକ କୁଛ୍ ଗୱେୟା କରକ ଲେନେକୁ ଆୟେହେଁ ।

ବାଈ ।—(ବ୍ୟଙ୍ଗଭାବେ) ଖୋଦା ଖୟର କରେ—ହାମ୍ ଲୋଗୋଁକୁ ଅଭି ଗୱେୟାକା କୁଛ୍ ହାଜତ ନେହି ହେ । ଗୱେୟା ଗିନ୍‌ତିକା ସୁର୍ ଶୁନ୍‌କେ ଆପ୍‌କା କାନ୍ ଯେସା ଖରାବ ହୁଆ ବୋଲକେ ହାମଲୋଗୋଁକୁ ନେହି ମାଲୁମ ଥା ।

ଧନ ।—( ଗମ୍ଭୀରଭାବେ ) ଠିକ୍ ବୋଲେ ବାଈଜି !—ସେବା ଗୱେୟା ହାମ୍‌କୋ କୁଛ ଅଚ୍ଛା ନେହି ଲଗତାହେ । ଆପକୁ ଯବ୍ ଗୱେୟା ଦରକାର ହୋଗା ଅୟେଙ୍ଗେ—ଖାଲି ଲିଖ୍‌ନେକା ହାଜତ ନେହି ହୋଗା—ଗହେନା ସବ ବନ୍ଧକ ଦେନେସେ ହୁଆ ।

ବାଈ ।—ଆପ୍‌କା ନଜର ଔର୍ ଅକଲ ବହୁତ ଅଚ୍ଛା ହେ—ଯେସା ମେହେରବାନ୍‌ଗି ଦୋସରା କୋଇ ଦୁସ୍‌ମନ୍ ପରଭି ନେହି ରଖେଙ୍ଗେ । ହକ୍‌ଦାରକା ମହେଲ୍‌ମେ ହଲଦାରକା ଉମେଦ କଭି ନେହି ହୋତାହେ ।—ଅଚ୍ଛା ହାମଲୋକ ଅତେହେଁ—( ହାତ ଉଠାଇ ) ସଲାମ !

ସଙ୍ଗୀବର୍ଗ ।—( ହାତ ଉଠାଇ ) ସଲାମ ସାହେବ ! ଖୋଦା ଗନିକିୟା ସରଫ ଗୱେୟା ଗିନ୍‌କେ ଲେନେକା ବାସ୍ତେ !

[ ବାଈ ଓ ତତ୍ସଙ୍ଗୀବର୍ଗର ପ୍ରସ୍ଥାନ ।

ଧନ ।—ଶ୍ରୀମନ୍ତକରଣେ ! ତୁମ୍ଭଙ୍କୁ ଗୀତ ଭଲ ଲାଗେ ?

୧ଶ୍ରୀମ ।—( ସ୍ୱଗତ ) ଏଟାକୁ କଣ କହିବା ? ( ପ୍ରକାଶ୍ୟେ ) ମୋତେ ଆଗେ ଭଲ ଲାଗୁଥିଲା—ହଜୁରଙ୍କ ନିକଟରେ ଶୁଣିକରି କଳା ଦିନକୁ ସବୁ ଗଲାଣି ।

୨ୟ ଶ୍ରୀମ ।—( ସ୍ୱଗତ ) ଭଲା କହିଲୁ ଏ !—ବସାରେତ ଏହାର

ଗୀତ ଶୁଣିବାକୁ ଦାଣ୍ଡଲୋକେ ରୁଣ୍ଡ ହୋଇଯାନ୍ତି ! —ହଁ, ଗୃହସ୍ଥ କଣ୍ଠରୁ ସବୁବେଳେ ସତ କହିଲେ କ ଚଳେ ?

ଧନ ।—ଭଲ ଭଲ ।—ଗୀତ ଫିତ ବଡ଼ଲୋକଙ୍କର କାମ । ତୁମ୍ଭେ ଦେଖୁଛତ ସ୍ତ୍ରୈ ବାଈମାନଙ୍କ ଯୋଗେ ମହାଜନୀ କାରବାର କେତେ ବଢ଼ିଛି । ବାଈମାନେ ବଡ଼ଲୋକଙ୍କୁ ମତାଇ ଦଅନ୍ତି ଓ ବଡ଼ଲୋକମାନେ ପାଗଳ ହୋଇ ଟଙ୍କା ସକାଶେ ମହାଜନଙ୍କ ଫାନ୍ଦରେ ପଡ଼ି ସର୍ବସ୍ୱ ବିକନ୍ତି ।—ସେଥିପାଇଁ ମୋତେ ତାଙ୍କର ଗୀତ ଭଲ ନ ଲାଗୁ ପଛକେ ସଂସାରରେ ବାଈ ଥିବା ଭଲ ।

ଶମ୍ଭୁ ।—ଯ୍ୟା ଆଉ କହିବା କୁ ଅଛି !

[ ସଦାନନ୍ଦ, କମଲଲୋଚନ, ବଂଶୀଧର ଓ ନିଶାକରର ପ୍ରବେଶ ।

ଧନ ।—( ଶଶବ୍ୟସ୍ତ ହୋଇ ବିଛଣାରୁ ଉଠି ଯାଇ ସଦାନନ୍ଦର ହାତ ଧରି ଆଣି ଆପଣା ବସିବା ସ୍ଥାନରେ ବସାଇ ନୀକଟେ ଉପବେଶନ ପୂର୍ବକ ଅଙ୍ଗୁଳି ନିର୍ଦ୍ଦେଶ କରି ) ଆପଣମାନେ ସେହିଠାରେ ବସନ୍ତୁ ।

କମ, ବଂଶୀ ଓ ନିଶା ।—( କିଞ୍ଚିତ୍ ଦୂରେ ଉପବିଷ୍ଟ । )

ଧନ ।—ଆପଣଙ୍କୁ ବହୁତ କଷ୍ଟ ହେଲା ।—ଆପଣ ହେଲେ ବଡ଼ଲୋକ—ରଜା ।

ସଦା ।—ନାହିଁ କଷ୍ଟ କଣ ନାହିଁ—ଆପଣ ଟିକିଏ ଅନୁଗ୍ରହ ରଖିଥିଲେ ହେଲା ।

ଧନ ।—ଏ କଥା ଆପଣ କହୁଛନ୍ତି ?—ମୁଁ ଯେତେ ହେଲେ ଆପଣଙ୍କର ଗୃହ୍ଣକର, ଯାହା ଯେତେବେଳେ ଆଦେଶ କରିବେ କରିବି ।

ବଂଶୀ ।—ସେଠିକ ! ତମସୁକଟା ଆଣନ୍ତୁ—ଆଉ ବିଳମ୍ବର ପ୍ରୟୋଜନ ନାହିଁ ।

ସଦା ।—ହଁ ଆଉ ବଳମର ପ୍ରୟୋଜନ ନାହିଁ ।—ସୁଦ କେତେ ଲେଖିଛନ୍ତି ?

ଧନ ।—ସୁଦ ଯା ଦସ୍ତୁର ଅଛି—ଶତକଡ଼ା ମାସିକ ଦେଢ଼ଟଙ୍କା, ଛ ମାସ ମିଆଦରେ ( କମ୍ପୁସରେ ) ସୁଦ ଅସଲ ।

ସଦା ।—( ଅନ୍ୟମନସ୍କ ହୋଇ ) ସେଠ୍‌ଜି ଏ ସୁଦ ବଡ଼ କଡ଼ା ହେଉଛି—ଆପଣ ବାରଅଣା କରି ଦିଅନ୍ତୁ ।

ଧନ ।—ବାରଅଣା ସୁଦ ମୋର ବାପଅମଳରେବ ନ ଥିଲା । ମୁଁ ତାହା କରି ପାରିବ ନାହିଁ ।

ସଦା ।—ସେଠ୍‌ଜି, ମୁଁ ଏତେ ଟଙ୍କା ନେଉଛି—ସୁଦର ବିଷୟ କ କଲେ ଚଳିବ କପରି ? ( ଟିକଏ ଚିନ୍ତା କରି ) ଆଚ୍ଛା ତେବେ ଟଙ୍କାଟିଏ କରି ଦିଅନ୍ତୁ ।

ଧନ ।—ତାହା ହେବ ନାହିଁ । ତମସୁକରେ ଯେପରି ଦେଢ଼ଟଙ୍କା ଲେଖା ଅଛି ସେପରି ଥାଉ—ଟଙ୍କା ପରିଶୋଧ କଲା ବେଳେ ଟଙ୍କାଏ ହିସାବ ଦେବେ । (ସ୍ୱଗତ) ନେଲାବେଳେ କ ଗୁଡ଼ିଲେ ଗଲା ।

ବଂଶୀ ।—ଏ ମହାଜନ ତାଙ୍କର ଲୋକଙ୍କ ପରି କୁହନ୍ତି—ଯାହା କହିବେ ସେଥିରେ ସମ୍ମତ ।—ଆପଣ ତମସୁକରେ ଦସ୍ତଖତ କରି ଦିଅନ୍ତୁ ।

ଧନ ।—( ମୁଦା ତମସୁକ ଖଣ୍ଡିକ ସଦାନନ୍ଦର ହାତକୁ ଦେଇ ) ଏହି ନିଅନ୍ତୁ ତମସୁକ ।

ବଂଶୀ ।—( କଲମ ଦୁଆତରେ ବୁଡାଇ ବଢାଇ ଦେଇ ) ଏହି ନିଅନ୍ତୁ କଲମ ।

ସଦା ।—( କଲମ ନେଇ ତମସୁକକୁ ଖୋଲି ତହିଁରେ ଦସ୍ତଖତ କରି) ହେଲା ?

ବଂଶୀ ।—( ତମସୁକ ନେଇ ) ଠିକ ହୋଇଛି—ଆପଣଙ୍କ ପରି

କେହି ଦସ୍ତଖତ କରି ପାରନ୍ତି ନାହିଁ । ( ଧନପତି ହାତରୁ ତମସୁକ ବଢାଇ ଦେବାର । )

ସଦା ।—ସାକ୍ଷୀ ପଡଲେ ନାହିଁ ?

ଧନ ।—( ତମସୁକ ନେଇ ) ସାକ୍ଷୀ ଆଗରୁ ଦସ୍ତଖତ କରିଛନ୍ତି— ଆପଣଙ୍କୁ ଉତ୍ତର ହେବ ବୋଲି ଆଗରୁ ସବୁ ଠିକ ହୋଇ ରହିଛି ।

ସଦା ।—( ଆନନ୍ଦିତ ହୋଇ ) ଭଲ ଭଲ, ଏହିପରି ଅନୁଗ୍ରହ ବରାବର ରଖିଥିବେ ।

ଧନ ।—( ତମସୁକକୁ ଖଣ୍ଡିଏ କାଗଜରେ ମୋଡ ତାହା ଉପରେ ଲେଖି ବାକ୍ସ ମଧ୍ୟରେ ରଖି ) ଟଙ୍କା ଆଣ ।

ହନୁମ ।—( ଉଠିଯାଇ ଘର ମଧ୍ୟରୁ ଥର ଥର କରି ଛଅମ୍ବାଲଶ ଗୋଟି ତୋଡ଼ା ରଖି ଦେଇ ) ଗଣନ୍ତୁ ।

କ୍ଷେମ ।—( ଅତିଆନନ୍ଦିତ ହୋଇ ସ୍ୱଗତ ) ଏତେ ତୋଡ଼ା ଏକାଠି ମୋ ଦେହକରେ ମୁଁ ଦେଖି ନ ଥିଲି । ଏ ମହାଜନଙ୍କ ଘରେ ଏମନ୍ତେ କେତେ ଅଛି କେ ଜାଣେ । ଏ ଟଙ୍କା ଶଗଡ଼ରେ ଗଲେ ବେଳେ କେଡେ ସୁନ୍ଦର ଦିଶିବ !

ସଦା ।—କେତେ ତୋଡ଼ା ଆଣିଲ କି ?

ହନୁମ ।—ଛଅମ୍ବାଲଶ ତୋଡ଼ା ।—ଏ ଅଛି ପଇଁଶ୍ବଲଶ ହଜାର ନାଅଶ ସଇଁତ୍ରିଶ ଟଙ୍କା ଅଠଅଣା ।

ସଦା ।—କାହିଁକି ? କଥାତ ହୋଇଥିଲା ଖାଲି ମୋଠାରେ ଶହେ ଶତ- କଡା ପାଞ୍ଚଟଙ୍କା ନେବେ—ଆଉ ଟଙ୍କା କୁଆଡ଼େ ଗଲା ।

ଧନ ।— ଇନକମ୍‌ଟିକସ ଦେବେ ନାହିଁ କି ? ମୋର ଦସ୍ତୁର ଅଛି ଯେ ଯେତେ ଟଙ୍କା ନେବ ଟଙ୍କା ମୁଣ୍ଡରେ ଦୁଇପଇସା ଇନକମ୍ଟିକସ କାଟି ରଖିଯିବ ।—ନୋହିଲେ ଆପଣମାନେ ଟଙ୍କା ନେବେ—ଅମ୍ଭେମାନେ କି ହାତରୁ ଟିକସ ଦେବୁ ?

କମ ।—( ସ୍ୱଗତ ) ସୁଦଖାଇବେ ସେ—ଟିକସ ଦେବେ ଏ । ଟଙ୍କାତ ଲୁଟି ପଡ଼ୁଛି !

ଏଷମୁ ।—ଟିକସ ଟା ଦେବାକୁ ହେବ ।—ଅଉ କଣ ମହାଜନ ସୁଦରୁ ଟିକସ ଦେବେ ? ତାହା ହେଲେତ ନହାଲ !

ସଦା ।—ଚାଲ ବଂଶୀଧର ଟଙ୍କା ଉଠାଅ । ତୁମ୍ଭେ କହୁଥିଲ୍ ଗଣିଛ ପରା ?

ବଂଶୀ ।—ଅବଧାନ ମୁଁ ନିଜେ ଗଣିକରି ରଖି ଯାଇଥିଲି । ଘରକୁ ଗଲାନୁ ପୁଣି ଗଣାଯିବ ।—ତୋଡାମାନ ଶଗଡ଼ରେ ଲଦା ହେଉ ?

ସଦା ।—ହଁ ଲଦାଅ ଯିବା ।

[ବଂଶୀଧର ଓ ନଶାକରର ତୋଡ଼ାମାନ ଏକ ଏକ କରି ବାହାରକୁ ନେଇ ଯାଇ ପ୍ରସ୍ଥାନ ଓ ସଦାନନ୍ଦ ଓ କମଳଲୋଚନର ପ୍ରସ୍ଥାନ ।

ଧନ ।—ଛମୁକରଣେ ସରକାର ଇନ୍‌କମ୍ ଟିକସ କରି ଆମ୍ଭମାନଙ୍କର ଯେ ଗୋଟିଏ ଲୁଟପରବାଟ ଖୋଲି ଦେଇଛନ୍ତି ତାହାକୁ ସରକାର ଲୁଚ ନ ଥିଲେ ।

ଏଷମୁ ।—ସରକାର ଯେମନ୍ତ ବୁଦ୍ଧିକରି ଟଙ୍କା ନେଲେ ହଜୁର ମହାଜନମାନେ ବି ତେମନ୍ତ ଗୋଟାଏ ଭଲ ପାଞ୍ଚ କରଛନ୍ତି । ସରକାର ବି ଟଙ୍କା ପାଇଲେ ହଜୁରଙ୍କ ଦେହକୁ ଲାଗିଲା ନାହିଁ । କାମଟା ପରେ ପରେ ଉଠିଗଲା ।—ବାହାରେ ମାରବେ ବାହାର ଲୋକେ ଭିତରେ ମାରବେ ସୁବୁଦ୍ଧି—ବଡ଼ଦେଉଳରେ ପଚାଶ ମାରବେ ଏଥିକି କରବ କି ବୁଦ୍ଧି !

ଧନ ।—ଘନବେଦନକ୍ଷି କହି ଯାଇଥିଲା ଆଜି ଇନକମ୍‌ଟିକସ ଅସେ-ସରବାକୁ କାହାକୁ କିଛି ନ କହି ମୋର ଦୋକାନ ତଦାରଖ କରବାକୁ ଆସିବେ ।—ତୁମ୍ଭେମାନେ ବହିସବୁ ସଜାଡ଼ି ରଖିଛ ତ ?

୧ଘମୁ ।—କିଏ?—ଧନଆ—ଅଫେସରବାବୁଙ୍କ ଗୃକର ?

ଧନ ।—ହଁ—ସେହି ।—ଧନବେହେରାଠାରେ ଅଫେସରବାବୁଙ୍କର ଭାରି ବିଶ୍ୱାସ

୧ଘମୁ ।—ଧନଆ ମାସକୁ ମାସ ଗୃହଅଣା କରୁ ପାଉଛୁ କହିବ ନାହିଁ ?—ହେସାବ କେତାବ ସବୁ ଠିକ,—ତମାଦି ବସ୍ତାନି ବି ଠିକ ବନ୍ଧା ହୋଇ ରଖା ଯାଇଛି ।

ଧନ ।—ତମାଦି ବସ୍ତାନିତ ମୋର ମହତ୍ତ୍ୱ ରଖିଛି । ଏ ଫନ୍ଦ କାଢି ନ ଥିଲେ ମୁତ ଟିକସ ଦେଉଁ ଦେଉଁ ସରଯାଇଥାନ୍ତି ।—ଉତଣ୍ଟ ଟଙ୍କା ନେଇ ଉଚିର ତମାଦି ହୋଇଥିବାର ଦେଖାଇବା ଫିକରକୁ ଅଫେସର ବାବୁ ବୁଝି ପାରିବେ ନା ଦପୋଟି ବାବୁ ବୁଝି ପାରିବେ ?

୧ଘମୁ ।—ଏହା କେହି ବୁଝି ପାରିବେ ନାହିଁ ।—ମନୁଷ୍ୟର ମାୟାରେ ଦେବତା ପଶି ପାରନ୍ତି ନାହିଁ !

[ଭଜନ ବାବୁଙ୍କର ପ୍ରବେଶ ।

ଧନ ।—କରେ ଭଜନା, ଏଡ଼େ ବ୍ୟସ୍ତ କାହିଁ କି ?

ଭଜ ।—ଅଫେସରବାବୁଙ୍କୁ ଆର ଛକପାଖରେ ଦେଖିଲି—ଏହି ଏଡ଼େ ଆସୁଛନ୍ତି ।

ଧନ ।—ବାଃ ବାଃ ବେଶ ଖବର ଆଣିଛୁ ।—ଭାଗ୍ୟକୁ ତୋତେ ଜଗାଇଥିଲି—ନୋହିଲେତ ମୋର ଦଶା ସରିଥାନ୍ତା । ଧନ ବେହେରା ଠିକ କହୁଥିଲା ।— ଆଚ୍ଛା ଯା ।

[ଭଜନ ବାବୁଙ୍କର ପ୍ରସ୍ଥାନ ।

ଘୁମୁକିରଣେ ? ଏ ବହି ସବୁ ଭିତର ଖଞ୍ଜାକୁ ନେଇ ଯାଅ ଆର ବହିସବୁ ନେଇ ଆସ ।

[ଘୁମୁକିରଣମାନଙ୍କର ବହିମାନ ଉଠାଇ ନେଇ ଯାଇ ତତ୍ପରିବର୍ତ୍ତେ ଅନ୍ୟ ବହିମାନ ଆଣି ସ୍ଥାପନ କରଣ ।

ତମାଦି ବସ୍ତାନିଟା ମୋତେ ଦିଅ ।

ଲକ୍ଷ୍ମୀ । — ଏହା ନିଅନ୍ତୁ । ( ଗୋଟିଏ ବସ୍ତାନ ଉଠାଇ ଧନପତିଙ୍କ ହସ୍ତେ ପ୍ରଦାନ । )

ଧନ । — (ବସ୍ତାନ ଖୋଲି ଏକ ଏକର କାଗଜ ଉଠାଇ ଦେଖି )ଏବେ ଅସେସର ବାବୁ ଆସନ୍ତୁ ।

ଲକ୍ଷ୍ମୀ ।— ହଁ ଏବେ ଆସୁଥାଅନ୍ତୁ —ତାଙ୍କ ଆଖିରେ ସହଜରେ ଧୂଳି ପକାଇ ଦେବା ।

[ ଜଣେକ ଚପରାସୀ ସହିତ ଅସେସର ବାବୁର ପ୍ରବେଶ । —

ଧନ ।—( ବ୍ୟସ୍ତ ଭାବରେ ଉଠି ଯାଇ ଅସେସର ବାବୁଙ୍କ ହାତ ଧରି ଆଣି ନିକଟେ ବସାଇ ) ଆପଣ ଆସିବେ ବୋଲି ଖବରଟା ଟିକଏ ଦେଲେ ନାହିଁ ?—ଖଣ୍ଡିଏ ଖୁରୁଷି ହେଲେ କାହା-ଠାରୁ ମାଗି ଆଣିଥାନ୍ତି ?

ଅସେ ।—କିଛି ପ୍ରୟୋଜନ ନାହିଁ—ଏଠି ବେଶ ବସିଛୁ ।—ଆପଣ-ଙ୍କର ଲକ୍ଷ୍ମୀକରଣମାନେ ଯେ ବସି ରହିଛନ୍ତି ?

ଧନ ।—ଆଉ ତେବେ ଆପଣ ଦେଖୁଛନ୍ତି କଣ ? —ଏମାନେ ପଗ ଖାଲି ବସି ବସି ଦରମାହା ଖାଉଛନ୍ତି ! ଆଉ କି ଆଗକାଳ ଅଛି ନା ଆଗ ବ୍ୟବହାର ଅଛି ? ଏତେ ବଡ ଛୋଟ ବଡ଼ ସମସ୍ତେ ମହାଜନ ହେବାକୁ ବସିଲେଣି । ଶାସ୍ତ୍ରରେ ଏ ବୃତ୍ତି ନିକୃଷ୍ଟ ଥିଲା ବୋଲି ଆମ୍ଭମାନଙ୍କୁ ପଗ ଅସ୍ପର୍ଶ୍ୟ କରିଥିଲେ— ଅଧମ କରିଥିଲେ—ଏବେ ଅମ୍ଭମାନଙ୍କ ଶିଷ୍ୟ ଦେଖି ନ ପାରି ଘରେ ଘରେ ସମସ୍ତେ ମହାଜନ ହେବାକୁ ବସିଲେଣି !—ଆଉ କହିବେ କାହାକୁ ? ଆପଣ ତ ଦେଖୁଥିବେ ପୁରୁଣା ମହାଜନଙ୍କ ବ୍ୟବସାୟ ମାନ୍ଦା ପଡିଗଲାଣି ।—ସବୁ ବ୍ୟବସାୟିତ ମାନ୍ଦା ଧରିଲାଣି ।

ଅସେ ।—ମାନ୍ଦା ବୋଲି କହୁଛନ୍ତି ସମସ୍ତେ—ମାତ୍ର ଲୋକେତ ଆଗ ଠାରୁ ଭଲ ଖିଆ ପିଆ କରୁଛନ୍ତି—ମାନ୍ଦା ହେଲା କପରି ?

ଧନ ।—(ସ୍ୱଗତ) ବ୍ୟବସାୟୀ ପକ୍ଷରେ ଯାହା ହେଉ ଲୋକଙ୍କର ଭଲ ଖାଇବା ପିଇବା ଅଭ୍ୟାସ ହେଲେ ଆମ୍ଭମାନଙ୍କର ଲାଭ—ନ-ଅଣ୍ଣ ହେଲାଯଣି ଆମ୍ଭମାନଙ୍କ ଦୁଆରକୁ ଦଉଡ଼ିବେ !—(ପ୍ରକାଶ୍ୟେ) ଲୋକେ ଭଲ ଖାଇଲେ ପିଇଲେ କଣ ବ୍ୟବ-ସାୟିଟା ଭେଜ ହୋଇଯିବ ?—ଆଉ ସମସ୍ତେ କଣ ଭଲ ଖାଉଛନ୍ତି ?—କଏ କେମନ୍ତ ଦାଣ୍ଡକୁ ଥରେ ଅଧେ ଖାଉ-ଥିବେ ନା !

ଅପେ ।—ନାହିଁ ନାହିଁ—ଆପଣ ଦେଖନ୍ତୁ ଜଣେ ଜଣେ ବାବୁ ମାସରେ ଦୁଇ ଗୃହଥର ନିମନ୍ତ୍ରଣ କରି ଖୁଆଉଛନ୍ତି । ତାଙ୍କର ଅର୍ଜନ ସେପରି ଅଛି ବୋଲି ସେ ଖୁଆଉଛନ୍ତି ସିନା ।

ଲକ୍ଷ୍ମୁ ।—(ହାତଯୋଡ଼) ମୋର ଦୋଷ କ୍ଷମା ହେଉ—ଆଗପରି ତ ଏବେ ନିମନ୍ତ୍ରଣ ନାହିଁ, ତହିଁକି ଆପଣ ଯେବେ ନିମନ୍ତ୍ରଣରେ ଦୃଷ୍ଟି ଦେବେ ତେବେ ଯାହା ବା ଠିକଏ ଟିକଏ କେହି ଶ୍ରଦ୍ଧା କରି ନିମନ୍ତ୍ରଣ କରୁଛନ୍ତି ତାହା ବି ଉଠିଯିବ !

ଅପେ ।—ନାହିଁ ଆମ୍ଭେ କଥା ପଡ଼ିଲା ବୋଲି କହିଲୁଁ । ଆମ୍ଭର ସେ-ପରି ଦୃଷ୍ଟି ନୁହେ କି ସେପରି ଗରଜ ନୁହେ । ଆମ୍ଭେ କି ଟିକସ ବସାଉଁ ? ଆମ୍ଭେ ତ କେତେ ଟିକସ ଛଡ଼ଦେବାକୁ କହୁଁ—କେତେ ଉଣା କରିବାକୁ କହୁଁ--ଦପୋଟି ବାବୁ ତ ଶୁଣନ୍ତି ନାହିଁ ।

ଲକ୍ଷ୍ମୁ ।—ଖାଲି ଆପଣଙ୍କ ନାଁଟି ବଦ ! ସମସ୍ତେ କହନ୍ତି ଆପଣ ହର୍ତ୍ତାକର୍ତ୍ତା !

ଅପେ ।—କାହା ପାଟିରେ କଏ ହାତ ଦେବ ?—ଯେତେ ଦୋଷ, ନନ୍ଦୀ ଘୋଷ ।—ସେ ବସ୍ତାନଟି କଣ ?

ଧନ ।—ଆଜ୍ଞା ଏହି ବସ୍ତାନ ଯୋଗେ ଗୃହଦହନ ହେଲା ମୋର ଚୁଲି ଜାଳିବାକୁ ନାହିଁ ।—ଆପଣ ପରା କହୁଛନ୍ତି ଲୋକେ ଭଲ ଖାଉଛନ୍ତି—ମୋର ଏଥି ସକାଶେ ଖାଇବା ପିଇବା ସବୁ

ଗଣ୍ଡୀ ।—ଦେଖନ୍ତୁ ( ଖଣ୍ଡିଏ କାଗଜ ବାହାରକରି ଅସେ-
ସରର ହସ୍ତେ ପ୍ରଦାନ । )

ଅସେ । —( କଚ୍ଛଣ ନିରୀକ୍ଷଣ କରି ) କଣ ଏତେ ତମାଦି ହୋଇ
ଯାଇଛି ? —ଦଶଲକ୍ଷ ପଞ୍ଚାଶ ହଜାର ତେପନ ।

ଧନ ।—ଆଜ୍ଞ କଣ ଦେଖିବା ହେଉଛନ୍ତି ! ଟଙ୍କା କେତୋଟିର ବ୍ୟବ-
ହାର କରିବ—ଅପଣଙ୍କ ସୁଦ କହିକରି ଠିକସ ନେବେ ।
ଦେଖନ୍ତୁ ଏ ବର୍ଷ ଦୁଇଟାମଧ୍ୟରେ ଏଦଶା । ଆଉ ଏଠି ବ୍ୟବ-
ହାର ଚଳିବ ନାହିଁ ।—ଦେଶାନ୍ତର ଯିବାକୁ ହେଲାଣି ।

ଅସେ ।—ଅମ୍ଭେତ ଏହା ଜାଣି ନ ଥିଲୁଁ ।—ସେସବୁ ନକଲ କଣ ?

ଧନ ।—ଏସବୁ ଡିକ୍ରିର ନକଲ , ଡିକ୍ରିଜାରି ଦରଖାସ୍ତର ନକଲ,
ତମାଦି ହୋଇଥିବା ହୁକୁମର ନକଲ—ନିଅନ୍ତୁ, ଦେଖନ୍ତୁ !
( ଗୋଛାଏ କାଗଜ ଅସେସରର ହସ୍ତେ ପ୍ରଦାନ । )

ଅସେ ।—( କାଗଜମାନ ଏକଠି କରି ଦେଖି ) ଅଚ୍ଛା ଅପଣ ଯାହା
ଦେଉଥିଲେ ସେହିତା ଦେବେ ।

ଧନ ।—( ଯୋଡ଼ହସ୍ତେ ) ଆଜ୍ଞା ଅପଣଙ୍କ ମୋର ଅବସ୍ଥା ଦେଖୁଛନ୍ତି
—କିଛି ଊଣାକରି ଦିଅନ୍ତୁ ! ନୋହିଲେଟି ଏ ଗରିବ ମରି-
ପଡ଼ିବ । ଅଜି କାଲି କେହି ଟଙ୍କା ନେବାକୁ ନାହିଁ—ନେଲେ
ବ ଦେବାକୁ ନାହିଁ, ଆଉ ନାଲିସ କଲେ ଠିକଏ କହିବା
ବୋଲିବାରେ ଦୋଷ ବାହାରିଲା ତ ମୋକଦ୍ଦମା ଡିସମିସ !—
ଅପଣ ଏହବୁ ବିଚାର ନ କଲେ ତ ଚଳିବ ନାହିଁ—ମୋର
ହର୍ତ୍ତାକର୍ତ୍ତା ଦୈବବିଧାତା ସବୁ ଅପଣ !

ଅସେ ।—( ଠିକଏ ଚିନ୍ତା କରି ହୃଷ୍ଟଭାବେ ) ଅଚ୍ଛା ଦେଖାଯିବ ।

ଧନ ।—ଆଉତ ଗତବର୍ଷ ପରି ହେବ ନାହିଁ ? ଅପଣ କହିଗଲେ
ବଢ଼ାଇବେ ନାହିଁ—ତେଣେ କୋଟିସ ଆସିଲା ଦେଖା !

ଅସେ ।—ନାହିଁ ନାହିଁ ମୁ ଯବାବ ଦେଇ ଯାଉଛି—ଏଥର ସେପରି
ହେବ ନାହିଁ । ( ଉଠି ଦଣ୍ଡାୟମାନ । )

ଧନ ।—ହେଉ; ଆପଣଙ୍କ ମର୍ଜ୍ଜି ।—ଦଣ୍ଡବତ୍ । ( କରଯୋଡ଼ି ଦଣ୍ଡବତ୍ କରଣ । )

ଅସେ ।—( କରଯୋଡ଼ି ଦଣ୍ଡବତ୍ କରି ) ଦଣ୍ଡବତ୍ । ( ପ୍ରସ୍ଥାନ । )

ଧନ ।—( ସକାଡ଼ିହୋଇ ବସି ) ଗଲା—ପାପଗ୍ରହ ଗଲା ! ଅସେସରଙ୍କୁ ଦେଖିଲେ ମୋର ଦେହର ରକ୍ତ ଅଧେ ଶୁଖିଯାଏ ।

୧ଖମୂ ।—ଶୁଖିଯିବାର ତ କଥା—ଏମନ୍ତେ ଯେବେ ପାଞ୍ଚଥର ଆସିବେ ଦେହରେ ଅବା କେତେ ରକ୍ତ ରହିବ ! ( ଅଙ୍ଗୁଳି ନିର୍ଦ୍ଦେଶପୂର୍ବକ ) ତେବେ ଏ ବସ୍ତାନି ମହତ୍ତ୍ୱ ରଖିଛି ।

ଧନ ।—ତୁମ୍ଭେପରା କହୁଥିଲ ଏଗୁଡ଼ାକ କଣ ହେବ ? ଭଲରେ ଥାଉ ମୋ କଲରାଗଛି—କଲରା ଥିଲେ ମୋ ଭଅଣ ଅଛି ।—ଏହାଙ୍କ ଚକ୍ଷୁରେ ଏପରଧୂଳି ନ ଦେଲେ ଖଜଣା ଦେଇ କି ମୁଁ ନିର୍ବାହ ହୋଇପାରିବ ? ( ମୁଣ୍ଡରେ ହାତଦେଇ ) ଓଃ ମୋ ମୁଣ୍ଡଟା ବଥଉଛି । ସକାଳୁ ଆସିବ ବୋଲି କହି ପଠାଇ ସନ୍ଧ୍ୟା-ନନ୍ଦ ଆସୁ ଆସୁ ବେଲ ଦ୍ୱିପହର । ଏଡ଼େ ଅଳସୁଆ ପୁଣି ଜମିଦାରମାନେ ହୁଅନ୍ତି !—ତାହାଉପରେ ଅସେସରଙ୍କ ଦାଉ । ବେଲ ଗଡ଼ିଗଲାଣି ଆସି ।—ଆଜ ଆଉ ଖିଆ ପିଆ ନାହିଁ । ଯାଉଛି ଶୋଇବ !—ତୁମ୍ଭେମାନେ ବସ୍ତାନି ବାନ୍ଧିଦେଇ ଯାଅ । ( ଗାତ୍ରୋତ୍ଥାନ । )

୧ଖମୂ ।—( ବସ୍ତାନି ବାନ୍ଧୁ ) ଜମିଦାରମାନେ ଯେତେ ଅଳସୁଆ ଅବୁଝା ହେବେ ତେତେ ହଜୁରଙ୍କର ଲାଭ ।—ତାଙ୍କର ସକାଳ ଦ୍ୱିପହରେ, ଦିନଖିଆ ସଞ୍ଜବେଳେ, ରାତ୍ରିଭୋଜନ ଶେଷ ଉନପ୍ରହରରେ !—ଚାଲନ୍ତୁ ଯିବା ।

[ ଧନପତି ଓ ଖମୁକରମାନଙ୍କର ପ୍ରସ୍ଥାନ ଏବଂ ଅଦୃଷ୍ଟ କୁମାରମାନଙ୍କର ପ୍ରବେଶ ।

ଅ—ଲୁ ।—( ନୃତ୍ୟ ସହିତ ଗୀତ ) ।

ସରିଣୀ ଇମନକଲ୍ୟାଣ । ତାଲଖେମଟା ।

ଏ କେବଳ ଧନ ସଞ୍ଚୟ କର ସଂସାରେ ।
ଇଚ୍ଛା ଲୋଡ଼ି ମରେ ଭୋଗ ନୁହେ ବାରେ । ଘୋଷା ।
ମିଥ୍ୟା ପ୍ରବଞ୍ଚନା, ବହୁଁକ ରଚନା,
ଲୋଭୁଁ ଜନମି ପାପ ଗ୍ରାସେ ନିଶି ବାସରେ । ୧ ।
କ୍ଷୁଧା ତୃଷା ନାହିଁ, ନିଦ୍ରା ଯାଇଛି କାହିଁ,
ସବେ ସ୍ୱର୍ଗକୁ ନେବେ ଭାର କରି ମଥାରେ । ୨ ।
ସଞ୍ଚୟ ସ୍ୱପ୍ନେ ଭୋଳ, ସଦା ମନେ ବିକଳ,
ପର ଭୁଞ୍ଜିବ ପରିଶ୍ରମ ସାର ଇଷାରେ । ୩ ।
ପୋଡିଯାଉ କାମନା, ବିଷୟ-ବାସନା,
ହର ଭଣ୍ଡାରୁ ହର ଚୋର ସର୍ବ ପ୍ରକାରେ । ୪ ।

ଯବନିକାପତନମ୍‌ ।



# ତୃତୀୟ ଅଭିନୟ ।

## ପ୍ରଥମଦୃଶ୍ୟ ।—ଦପ୍ତର ।

[ କାନରେ ଲମ୍ବ କଲମ ଗୁଞ୍ଜି ଶଠଶିଖର ଏକାକୀ ଆସୀନ । ]

ଶଠ ।—( ସ୍ୱଗତ ) ଆଜ ଏତେବେଳଯାଏ କାହିଁ କାହାର ଦେଖା ନାହିଁ ! ଦଘଣ୍ଟା ହେଲା ଆସି ବସିଲିଣି—କେହି ଥୋପ ଗିଳୁ ନାହାନ୍ତି ! ଆଉ ଆଉ ଦିନତ ପାଞ୍ଚମିନିଟ ମଧ୍ୟରେ ମାଛ ପଡ଼ିଯାଏ । ଆଉତ କେହି ଆସି ମାଛ ମାଗ ନେଇ ଯାଇ ନାହିଁ ! ( ଦୀର୍ଘନିଃଶ୍ୱାସ ପକାଇ ) ହୋ ! ଏତକ ପୁଣି ଟରଣି ହେଲେଣି ଏ କାଳରେ ! ଏଥିରେ ମନୁଷ୍ୟ ଅରଞ୍ଜବ ଜସ ? ଯାହାକୁ ଖଣ୍ଡିଏ ବସ୍ତାନି କନା ବାନ୍ଧି ନ ଆସେ ସେବି କାନରେ ଗୋଟାଏ କଲମ ଖୋସି କହୁଛି କଣ ନା ମୁଁ ମୁନୁସି ! ମଣ୍ଡକଲ ଆଇଲାତ ଦାସଙ୍କ ପର ଅଣ୍ଟା ଅଣ୍ଡ୍ରାଳଲେ ! ମଣ୍ଡକଲର ପଇସାକୁ ପଇସା ଗଲା, ଆଉ ଲେଖି ନ ଜାଣିଲାରୁ ମାମଲାକୁ ମାମଲା ଗଲା !—ଆଉ ମୁଁ ?—(କାନରୁ କଲମକୁ ଆଣି ଦେଖି ପୁନର୍ବାର କାନରେ ଲମ୍ବକର ଖୋସି) ମୋରତ ଅନା ଅମଳରୁ କାମ ଏହି ଟରଣୀଗିରି ! ହାବୁଡ଼େ ପଡ଼ିଲେ ଉବୁର ଯିବା ବଡ଼ ଗହନ କଥା । ଆଉ ଲେଖିବାକୁ ?—ଲେଖିବାକୁ ମୁଁ ଘଷବ—ତେବେ ହାକିମ ବୁଝି ପାରନ୍ତି ନାହିଁ ମୋର ଦୋଷ କଣ !

[ ଦିଗମ୍ବରର ପ୍ରବେଶ ।

ଦିଗ ।—କରେ ଶଠ, ଆଜ ଏତେବେଳଯାଏ କେହି ଥୋପ ଗିଳି ନାହାନ୍ତି କି ?—ଏକାତ ବସିଛୁ !

ଶଠ ।—ନାହିଁରେ ଦିଗାଭାଇ, କେହି ଗୋଟିଏତ କାଗଜଧର ମନୁଷ୍ୟର ଦେଖା ନାହିଁ । କାଗଜ ଖଣ୍ଡ କେହି ଗୋଟିଏ ନେବାର

ତେଡେଦେବରୁ ସ୍ୱବା ମାମଲା ଲାଗିଲାପରି ଦଶୁନାହିଁ । —ଭାଇ ତୋର ମାମଲାର ପଗ ଆଜ ତାରିଖ ଥିଲା —କଣ ହେଲା ?

ଦଗ । —ସେ ସୁଦର୍ଶନର ? —ଉଡ଼ାଇ ଦେଲି ଯେ !

ଶଠ । —ଉଡ଼ାଇ ଦେଲୁ ? ମାମଲା ଉଡ଼ିଗଲା ? ( ଆନନ୍ଦରେ ଉଠି ଦିଗମ୍ବରଙ୍କୁ ଆଲିଙ୍ଗନ କରି ) କହିଲୁ କହିଲୁ କପରି ମାମଲା ଜିତିଲୁ ।

ଦଗ । —ଆରେ ଭାଇ ସେ ମଫସଲିଆଟା ଆମଠୁ ଜିତି ଯିବ ? ବେଶ୍ୟାର ଏକା ଚଉଦ ଟଙ୍କା ପାଞ୍ଚଅଣା ଦେଇଥିଲା ଠିକ । ମୁଁ ଏଣୁ ତେଣୁ କାଗଜ କେତେଖଣ୍ଡ ଲେଖିଥିଲି । ତାହା ବାଦ ମୋର ଦାସୀ ମାଣ ବସିବ ବୋଲି ମନୁଷ୍ୟ ପଠାଇଲା —ସେ ପାଞ୍ଚଟଙ୍କା ନେଲା ତେବେ ଯାଇ ଛାଡ଼ିଲା । ବାଟରେ ଆସୁ ଆସୁ ଶୁଣି ବେଶ୍ୟାର ତାର ଦାମ ମାଗିଲା —ତିନଟଙ୍କା ତାକୁ ଦେଲି । ଅଫିମବାଲାର ଟଙ୍କାଟିଏ ବାକି ଥିଲା ସେ ନେଲା । ଗୁଡିଆର ଟଙ୍କାଏ ଛଅଣା ବାକି ଥିଲା ତାକୁ ଦେଲି । ବସା-ବାଲାରବ ପଇସା ବାକି ଥିଲା ତାକୁ ଦେବା ପାଇଁ ଯବାବ-ଦେଇଥିଲି —ଭାଇ ଆଉ କଣ କହିବି ଜଣାତ ହୋଇଥିଲା ଖୋଇ ପଡ଼ିଲି— ନା ବଟୁଆଟି କିଏ ଚୋରି କରି ନେଲା ! ପଇସା ଯାକତ ସବୁ ଗଲା— ଆଉ ଅର୍ଜି ଦାଖଲ କରିବ କପରି ? ମଓକିଲଙ୍କୁ କହିଦେଲି ଅର୍ଜି ଦାଖଲ ହୋଇ ତାରିଖ ହୋଇ ଗଲା ଏହା ବୋଲି ମଓକିଲଙ୍କୁ ତାରିଖ ଗୋଟାଏ କହିଦେଲି । ଆଉ ତାରିଖ ଦିନ କି ମୁଁ କଚେରିକୁ ଯାଉଛି ? — ମୂର୍ଖ ଦାସୀ ଘରେ ମଓକିଲ ତେଣେ କଚେରିରେ ମୁଣ୍ଡ ପିଟି ମରୁଛି ।

ଶଠ । — ସେ ସବୁ ମୁଁ ଜାଣେଁ —ମାମଲା ଉଡ଼ିଗଲା କିପରି ?

ଦଗ । — ଯା ଆଉ ତୋତେ କହିବାକୁ ହେବ ? —ଭୁଲି ସ୍ୱାଦୁ

ବଳ କେତେ କେତେ କାଣ୍ଡ କର ଉଭୁର ଯାଇଛୁ ।—ସାକ୍ଷୀ ସବୁ ତାର ଆସିଥିଲେ ଯେ ତାଙ୍କୁ ଦ ଦ ଟଙ୍କା ଦେବାର ଯବାବ କରବାରୁ ଗୁହା ସବୁ ବିଗଡିଗଲେ ! କିଏ କହିଲା ଡେଉ-ଟଙ୍କା ବାରଅଣାର ଖାଲି ପଇସା , କିଏ କହିଲା ଟଙ୍କା ଦଶୋଟ୍ଟ ପଇସା ଛଅଅଣା— ଅଉ ଜଣେ କହିଲା ସେ ଅସି କ ସ୍ୱପ୍ନ କା ଦେଖି ନାହିଁ ! ହାକିମ ଗପ୍ ଲେଖିଲେ ବାଦୀ ମିଥ୍ୟାବାଦୀ ଓ ତାର ମୋକଦ୍ଦମା ମିଛ ।

ଶଠ ।— ଗୁହାଙ୍କୁ ଟଙ୍କା ଦେଲୁ ?

ବଗ ।— ଗୁହାଙ୍କ ଯବାନବନ୍ଦୀ ସରବାଯାଏ ମୁଁ ଥିଲି । ହାକିମ ଗପ୍ ଲେଖିବାକୁ ବସିଲେ ମୁଁ ତ ହୁ ! ( ଅତି ଆନନ୍ଦରେ ) ମଫସଲିଆ ଗୁଡାଏ ମୋତେ ଜାଣିପିବେ ?

ଶଠ ।— ଗୋଟିଏ ପଇସା ଦେଇ ନାହୁ ?

ଦିଗ ।— ପଇସା ? ମୋଠି କଣ ପଇସା ଥିଲା ଯେ ଦିଅନ୍ତି ? ଯବାବତ ଦେଲି ଯେମନ୍ତ କେତେ ପଇସା ଅଛୁ । ଶୁଣି-ଦୋକାନରୁ ମାମଲା ଡିକ୍ରି ହେବାର ଶୁଣି କେତେବେଳେ ଯାଇ ଜଣେ ଓକିଲଙ୍କୁ ଧର ଗପ୍ ବୁଝିଲି ।—ଗୁହାମାନେ ମୋତେ ଖୋଜୁଥିଲେ ଫେର କାନମୁଣ୍ଡ ଅଉଁସି ଚାଲିଗଲେ । ରକ୍ଷା ହେଲା ଭାଇ । ସେ ଗୁହାମାନେ ଯେବେ ମାନ ନ ଥାନ୍ତେ ବାଦୀର ମାମଲା ଡିକ୍ରି ହୋଇଥିଲେ ହାକିମ ପଗ ଯେପରି ଧମ-କାଉଥିଲେ ମୋତେ ନିଶ୍ଚେ ଫଉଜଦାରୀ ସୁପର୍ଦ୍ଦ କର ଥାନ୍ତେ— ମୋତେତ ତିନ ବର୍ଷ ମାମୁଘର ଦେଖିବାକୁ ହୋଇଥାନ୍ତା । —ଭାଇ ଅଉ ସବୁ କାହାର ଦେଖା ନାହିଁ କାହିଁକ ?

ଶଠ ।—କାହିଁରେ ଭାଇ ମୁଁ ତ ବଡଘଣ୍ଟା ହେଲା ବସିଛି କାହାର ଭେଟ ପାଉ ନାହିଁ । ଭାଇ, ଗୋଟାଏ ବଡ଼ ମାଛ ଅଛି— ସେହିଟା ଥୋପ ଗିଳବ କି ? (ଉପବିଷ୍ଟ ହୋଇ) ବସ ।

ଦଗ । (ପାର୍ଶ୍ୱେ ଉପବେଶନ କରି) କିଏ କହିଲୁ ?

ଶଠ ।—ଚୌଧୁରୀ ସଦାନନ୍ଦ ପଟ୍ଟନାୟକ ।

ଦଗ ।—ଅରେ ସେ ସଦାଇ ବାବୁ ?—ତାର ପୁଅ ବାହାଘରେ ଖୁବ ଖାଉଛୁଁ ? ଏଡ଼େ ବଡ଼ ବାହାଘର ଏ ଅଞ୍ଚଳରେ ହୋଇ ନ ଥିଲା । ଲୋକେ ଏବେ ଖାଇଛନ୍ତି, ଏବେ ନେଇଛନ୍ତି , ଏତେ ରୋଷନୀ ଆଉ ଏବେ ବାଣ ପୋଡ଼ା ହୋଇଛି ଯେ କହିଲେ ସରିବ ନାହିଁ ।—ଦେଖିଥିଲ ?

ଶଠ ।—ଏବେ ତାହାର ମଜା ବାହାରୁଛି ! ପଚାଶ ହଜାର କର୍ଜ କରି ପୁଅ ବାହାଘରେ ଉଡ଼ାଇଲେ—ଏଣେ ମହାଜନ ହୁଇ ଲକ୍ଷ ଟଙ୍କା ଭିଡିଦେଇ ନାଲିଶ କରିଛି । ଏହା ଉପରେ ପୁଣି ଖର୍ଚ୍ଚ ବର୍ଚ୍ଚ ଅଛି । ସୁଦ ଆଗରେ ଘୋଡ଼ା ଦଉଡି ପାରେ ନାହିଁ, ଆଉ ଏତ ହେଲା ଚକ୍ରବୃଦ୍ଧି ସୁଦ !

ଦଗ ।—(ଆଶ୍ଚର୍ଯ୍ୟାନ୍ୱିତ ଭାବରେ) ଚକ୍ରବୃଦ୍ଧି ସୁଦ !

ଶଠ ।—ଧନପତିରାମ ଘରେ ଆଉ ଖାଲି ସୁଦର ଗୁଣ ଅଛି କି ?— ଯେତେ ଦେଖ ସବୁ ଚକ୍ରବୃଦ୍ଧି—ଚକ୍ର ପରି ଯେଉଁଏ ଗଡ଼ା- ଗଲାବେଳକୁ ସଦ ହେଲା ଛନ ଗୁଣ ।—କଥାରେ କହନ୍ତି ରଙ୍କେ ଗଲେ ବାର ହାତ !

ଦଗ । ହଁ, ମୂଳ ନାବା ହୋଇ ଯାଇଥିଲା—ଏବେ ଶୁଣେ ପଚାଶ ହଜାର କପର ଦୁଇ ଲକ୍ଷ ହେଲା । ତାହା ଉପରେ ଖର୍ଚ୍ଚ ବର୍ଚ୍ଚ ଓକିଲ ମୁକ୍ତାର ଟରଣି ସାକ୍ଷୀ ଗଣ୍ଡୀ ଷ୍ଟାମ୍ପଣ୍ଡୀ କେତେ ଅଛନ୍ତି !—ସଦାଇ ବାବୁଙ୍କ ଭିଟା ମାଟି ଉଛନ୍ନ ଯିବ ।

ଶଠ !—ଏହା ଆଉ ପଚାରିବାକୁ ଅଛି ?—(ଦୂରକୁ ଅନାଇ) ହେଇ ସଦାଇ ବାବୁ ଆସୁଛନ୍ତି ।—ଏହାଙ୍କ ଗୋଟିଏ ଓକିଲ କଭିବ ନେଇ ପାରିଲେ ଉତ୍ତମ ଅର୍ଜ୍ଜନଟା ହେବ ।

ଦଗ !—ମୋ ଓକିଲ କଭିକ ନେଲେ ଟଙ୍କାକେ ଛଅଣା ମିଳିବ ।

ଶଠ ।—(ମୁହଁ ଛାଣି କରି) ଛଅଣା ! ଭୁତ ଭାଗ ଜାଣୁ ! ଏତେ ବଡ଼ ମଓକ୍କଲ, କେବେ ଟଙ୍କା ଲାଭ ଦେବ—ମୁଁ ଓକିଲ କଉଡ଼ିରୁ ଦଶଅଣା ନ ପାଇଲେ ସହଜରେ ଏ ମଓକ୍କଲଙ୍କୁ ଦେଉଛି !

[ ଦିବ୍ୟ ପୋଷାକରେ ସଦାନନ୍ଦର ପ୍ରବେଶ ।

(ଠିଆ ହୋଇ କରଯୋଡ଼େ ଦଣ୍ଡବତ କରି) ଦଣ୍ଡବତ ।

ଦଗ ।—(ଠିଆ ହୋଇ କରଯୋଡ଼େ ଦଣ୍ଡବତ କରି) ଦଣ୍ଡବତ ।

ସଦା ।—(କରଯୋଡ଼େ ଦଣ୍ଡବତ କରି) ଦଣ୍ଡବତ ! ତୁମ୍ଭେମାନେ ଏଠାରେ କଣ କରୁଛ ?

ଶଠ ।—କିଛି ନାହିଁ—ଏଠି ବସି ଦୁଃଖସୁଖ ହେଉଁ ହେଉଁ ଆପଣଙ୍କ କଥା ପଡ଼ିଥିଲା ।

ସଦା ।—(ଆନନ୍ଦରେ) ଆମ୍ଭର ମୋକଦ୍ଦମା କଥା ?—ସତେ କହିଲ କିସ କରାଯିବ ।

ଶଠ ।—(ଦମ୍ଭ ଭାବରେ) ସେଥିରେ ଭାବନା କିସ ଅଛି ? ଦୁଇ ପଦ କଥାରେ ମାମଲା ଉଡ଼ିଯିବ ।—ଏକା ଟାଣୁଆ ଦେଖି ଓକିଲଟାଏ ଦେବେ ।

ସଦା ।—ଆମ୍ଭେତ ଚକ୍ରବୃଦ୍ଧି କଥା ଜାଣୁଁ ନାହିଁ ।—ସୁଧର କଥା ହୋଇଥିଲା ଶତକଡ଼ା ଟଙ୍କାଏ !

ଶଠ ।—ବେଶ ବେଶ ! କିରେ ଦଗାଭାଇ ଏ ଭଲ କାରଣ ନୁହେଁ ?

ଦଗ ।—ଅତି ଉତ୍ତମ କାରଣ । (ଆଶ୍ଚର୍ଯ୍ୟାନ୍ୱିତ ହୋଇ) ଏ ମହାଜନ ଗୁଡ଼ାକର ଟିକିଏ ବିଚାର ନାହିଁ—ସାଦାସିଧା ଲୋକ ଦେଖି ମନକୁ ଅନାଇ ଚକ୍ରବୃଦ୍ଧିର ସୁଧ ଲେଖାଇ ନେଲା !—ଆଉ ଏତେ ଗୁଡ଼ାଏ ଟଙ୍କା ଋଣ ଦେଲେ ସୁଧତ କେଉଁଠି ଟଙ୍କାକରୁ ଅଧିକ ହୋଇ ନାହିଁ ବରଂ ଊଣା ହୁଏ ।

ଶଠ ।—ଧନପତିସମସ୍ତ ଛାଡ଼ି କୃପଣ—ବଡ଼ ସାଧୁ—ଦୁଷ୍ଟଙ୍କର ଶିରୋମଣି !—ଅଚ୍ଛା ମୋ ବିଚାରରେ ପ୍ରଥମେ ଜଣେ ଗ୍ରେଟ୍

ଓକିଲ ସଙ୍ଗେ ପରାମର୍ଶ କରିବା ତହିଁ ଉତ୍ତାରୁ ବଡ଼ ଓକିଲ କଭିକ ଯିବା ।—( ଦୂରରୁ ଅନାଇ ) ରହ ରହ ଭଲ ସୁଯୋଗ ଘଟିଛି ।—ହେଇଟିତ ଜ୍ଞାନବାବୁ ନୂଆ ଓକିଲ ଆସୁଛନ୍ତି—ପଚାରିନେବା ।—ଜ୍ଞାନବାବୁଟି ସାଜ ଓକିଲ ନା—କଥା ପଚାରିଲେ ଯବାବ ଦେଉଛନ୍ତି ! ଟିକିସାପର ସ୍ୱସ ବସ! ଏହିକ୍ଷଣି ତାଙ୍କର ପଢ଼ା ତଟକା ଅଛି ।

ସଦା ।—ହଁ ହଁ ପଚାରିନିଅ ଭଲ ହେବ ।

[ ଜ୍ଞାନଭଣ୍ଡାରର ପ୍ରବେଶ ।

ଶଠ ।—ଜ୍ଞାନବାବୁ ! ( ସଦାନନ୍ଦ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ ପୂର୍ବକ ) ଏହାଙ୍କୁ ଚିହ୍ନନ୍ତି ?

ଜ୍ଞାନ ।—ନା—ଆମି ଚିନ୍‌ତେ ପାରି ନାହିଁ ।

ଶଠ ।—ଏ. ଜଣେ ଏଠାର ଭାରି ବଡ଼ଲୋକ—ଲକ୍ଷପତି ! ଏହାଙ୍କ ନାମ ଚୌଧୁରୀ ସଦାନନ୍ଦ ପଟ୍ଟନାୟକ ।

ଜ୍ଞାନ ।—ନା ଆମିତ ଚିନି ନ ଥିଲା । (ସଦାନନ୍ଦ ସହିତ କରମର୍ଦ୍ଦନ । )

ସଦା । ଅପ୍‌ନି ବଙ୍ଗଦେଶୀୟ ଲୋକ ଆମାଦେର ଚିନ୍‌ବେନ କି କରେ ?

ଜ୍ଞାନ ।—ନା ନା—ନିଜେ ହଲେ କି ଆର ଚିନ୍‌ବନା । ଯଖନ୍ ଆପ୍‌ନାଦେର୍ ଦେଶେ ଏସେଚି ତଖନ୍ ଆପ୍‌ନାଦେର୍ ଚିନ୍‌ତେଇ ହବେ ।

ଶଠ ।—ଏହାଙ୍କର ଗୋଟିଏ ମୋକଦମା ଅଛି ।

ଜ୍ଞାନ ।—କୋ—କୋ—କୋଉଟି ?

ଶଠ ।—ଅଲ୍ଲାସାହେବଙ୍କ ମିସଲରେ । ଧନପତିରାମ ମହାଜନ ପକ୍ଷ ଏହାଙ୍କ ନାମରେ ପ୍ରାପ୍ୟ ଦୁଇଲକ୍ଷ ଟଙ୍କା ଦାବିରେ ନାଲିଶ କରିଦେଇ ବସିଛି । ଏ ମହାଜନ-ପରିଶୋଧ ଅଉ ପୁଅ ବାହାଘର ପାଇଁ ନେଇଥିଲେ ପଞ୍ଚାଶ ହଜାର ଅଉ ମହାଜନ

ଟଙ୍କାକୁ ଦେଢ଼ଟଙ୍କା ସୁଦ କର ତାକୁ ଛଅମାସିଆ ଚକ୍ରବୃଦ୍ଧି କରି ଦୁଇଲକ୍ଷ ସତର ଭର୍ତ୍ତିଦେଇଛନ୍ତି ।

ଜ୍ଞାନ ।—ଛଅ ମାସେର ସୁଦକୁ ଅସଲ ମିଶାଇ ତାର ଉପରେ ସୁଦ କଷିଛନ୍ତି ?

ଶଠ ।—ହଁ; ଅଉ ସୁଦ ଶତକଡ଼ା ମାସକୁ ଟଙ୍କାଏ ହିସାବ କଥା ହୋଇଥିଲା ତାକୁ ଦେଢ଼ଟଙ୍କା କରିଛି ।

ଜ୍ଞାନ । ଜାଲ କରଛନ୍ତି ? ତମସୁକ ରେଜଷ୍ଟ୍ରୀ ହଇଛି ?

ଶଠ ।—ଏତେ ଟଙ୍କାର ଦସ୍ତାବିଜ—ତମସୁକ ରେଜଷ୍ଟ୍ରୀ କରିବ ଅଉ କିଏ ।

ଜ୍ଞାନ ।—ଯେବେ ମହାଜନ ସେପର ଲେଖିଏ ନଲା ତେବେ ଏ ରେଜଷ୍ଟ୍ରୀ କରେ ଦେଲ କାହିଁକି ? ଅତେବ ଉପାୟ ନାହିଁ—ଦସ୍ତାବିଜ ରେଜଷ୍ଟ୍ରୀ କରେ ଦେଇ ତାର ସର୍ତ୍ତେର ବିପରୀତ ପ୍ରମାଣ ହବେ କିପର ? ଆଇନରେ ମାନା ଅଛି ।

ଶଠ ।—ଆପଣଙ୍କୁ ତ ସବୁ ଆଇନ ପଢ଼ା ଅଛି, ଟିକିଏ ଭଲକରି ବୁଝନ୍ତୁ । ଆପଣଙ୍କର ନାମର ବାହାର ଗଲାଣି—ଏ ମାମଲା ଜିତି ପାରଲେ ଖୁସିନାମ ହେବ । ଗୋଟାଏ ଉପାୟ ଭାବନ୍ତୁ ।

ଜ୍ଞାନ ।—(ଟିକିଏ ଚିନ୍ତା କରି) ଅଚ୍ଛା, ତମସୁକରେ ସାକ୍ଷୀ କିଏ କିଏ ପଡ଼ିଛନ୍ତି ?

ଶଠ ।—ସମସ୍ତେ ମହାଜନର ଗୁମାସ୍ତା ।

ଜ୍ଞାନ । ତବେ ତମସୁକ ଲେଖେ ଦେଇ ନାହିଁ ଟଙ୍କା ନଏ ନାହିଁ କହିଲେ ମାମଲା ଚଳିବେ ।

ଶଠ ।—ଶୁଣିଲେ ସଦାଲ ବାବୁ !

ସଦା ।—ଅମ୍ଭେ ତ ତମସୁକ ଲେଖି ଦେଇଛୁଁ—ମିଛ କହିବୁଁ ନାହିଁ ।

ଜ୍ଞାନ ।—ଶଠେ ଶାଠ୍ୟଂ ସମାଚରେତ୍ । ମହାଜନ ମିଛେ ଲଗାଇ ମାମଲା କରଛନ୍ତି ତାତେ ମିଛ ଲଗାଇ ଯବାବ ନା ଦଲେ

ଚାଲିବେ କପରି ? ଅଦାଲତକେ ଯେ ଆସିବ ସେ ଦୁଟା ମିଛକଥା ଲଗାଇ ଅସିବା ଅସିବା ।

ସଦା ।—ସେ ନୀତି ଆମ୍ଭଙ୍କୁ ଜଣା ନାହିଁ । ମହାଜନର ପଛକେ ଟଙ୍କା ବଢ଼ୁ, ଆମ୍ଭର ପଛକେ ସର୍ବନାଶ ହେଉ—ଅମ୍ଭେ କଦାଚ ମିଛ କହିବୁ ନାହିଁ ।

ଶଠ ।—( କଣ୍ଠର ରୁକ୍ଷ ହୋଇ ) ମିଛକଥାତ କହିବେ ନାହିଁ—ମାମଲାର ପରାମର୍ଶ କାହିଁକି ପଚାରିଲେ ? ସବୁ ଧର୍ମ ରକ୍ଷା ହେଉଥାନ୍ତା କି ଏ କଥା କହିଲେ ଚଳନ୍ତା । କେତେତ ଅଧର୍ମ ହୋଇଯାଉଛି ଖାଲି ମିଛ ନ କହିବାକୁ ଜଗିଲେ କସ ହେବ ?

ସଦା ।—ସେ ଯାହା ହେଉ ମିଛ ଆମ୍ଭେ କେବେ କହିବୁଁ ନାହିଁ ।

ଧଗ ।—ନା ନା—ସଦାଇ ବାବୁ ବ୍ରହ୍ମାଣ୍ଡ ପ୍ରଳୟ ହୋଇଗଲେ ମିଛ କହିବେ ନାହିଁ—ଅଉ ମିଛ କହିଲେ କ ହେବ ? ତମସୁକକୁ ନାସ୍ତି କଲେ ସବରେଜଷ୍ଟ୍ରର ନାହାନ୍ତି ? ସେତ କହିବେ ସଦାଇ ବାବୁ ରେଜଷ୍ଟ୍ରର କରି ଦେଇଛନ୍ତି । ( ଈଷଏ ଚିନ୍ତା କରି ) ହଁ ହଁ ଭଲ ମନେ ପଡ଼ୁଛି—ସବରେଜଷ୍ଟ୍ରର ପର୍ଶ୍ଵ ଝିଅ ବାହାଘରକୁ ଧନପତିସ୍ବାମୀଠାରୁ ହଜାରେ ଟଙ୍କା ଋଣ ନେଇଥିଲେ ।

ଶଠ ।—ଠିକ୍ ଠିକ୍—ସେ ଟଙ୍କାତ ଏବଯାଏ ପରିଶୋଧ ପାଇ ନାହିଁ ।

କ୍ଷାକ ।—ତବେ ଠିକ୍ ହଇଛି—ତମସୁକ ଅସ୍ବୀକାର କଲେ ମାମଲା ବେଶ ଚାଲିବେ ।

ସଦା ।—ବାବୁ ଆମ୍ଭେତ ମିଛ କହିବୁଁ ନାହିଁ ।

କ୍ଷାକ ।—ତବେ ଘରେଁ ଯାଅ ( ସଦାନନ୍ଦ ସହିତ କର ମର୍ଦ୍ଦନ କରି ପ୍ରସ୍ଥାନ । )

ଶଠ ।— ଏ ସାମାନ୍ୟ କଥାକୁ ଆପଣ ଡରୁଛନ୍ତି କାହିଁକି ? ଲୋକେ କେତେ କେତେ ମିଛ କହୁଛନ୍ତି ! ଆପଣତ କାହାରି ଗଣ୍ଡିର

ଖାଇ ଯାଉ୍ ନାହାନ୍ତି — ମହାଜନ ଯେପରି ମିଥ୍ୟା ବ୍ୟବ-ହାର କରଛନ୍ତି ଅପଣଙ୍କୁ ସେଥି ସକାଶେ ପଦେ ମିଛ କହିବାକୁ ପଡ଼ିବ । ଅମ୍ଭେମାନେ ଯବାବ ଓ ସାକ୍ଷୀସବୁ ଠିକ କରି ଦେଉଁ — ଓକିଲ ସବାଲ ଯବାବ କରିବେ - ଅପଣଙ୍କ ଦେହକୁ କିଛି ଲାଗିବ ନାହିଁ । ଖାଲି ଅସ୍ୱୀକାର କଲେଇ ହେଲା । — ମୂଳୁ ମାଇଲେ ଯିବ ସରି— ଦେବଙ୍କ ସଙ୍ଗେ କଥା କଳ !

ସଦା— ନା ନା— ଯାହା ପ୍ରକୃତ କଥା ତାହା ଅମ୍ଭେ କହିପାରୁଁ— ମିଛ କେବେ କହିବୁଁ ନାହିଁ ।

ଶଠ ।— ତେବେ ଯାଉ— ଅପଣଙ୍କର ଦଶା ମନ୍ଦ, ଅପଣ କ କରିବେ ! ଗୃହ ଦଶା ଛାଇ ଉତ୍ତର ହେଲାଣି ଯିବା । ଯେମନ୍ତ କାର୍ଯ୍ୟ କରଛନ୍ତି ତେମନ୍ତ ଉତ୍ପନ୍ନ ଯିବେ ।— ହିଁକଏ ମିଛ କହିଲେ ସୃଷ୍ଟିରକ୍ଷା ହୋଇଯାନ୍ତା— ହୋଇଲା ନାହିଁ ।

[ ଦଗମ୍ବର ଓ ଶଠଶିଖରର ପ୍ରସ୍ଥାନ ।

ସଦା ।— ( ସ୍ୱଗତ ) ମହାଜନମାନେ ଏତେ ଛନ୍ଦ କପଟ କରନ୍ତି ଏହା କଏ ଜାଣିଥିଲା ? ତେତେବେଳେ କେତେ ଅଦର କରି ବସିଲା ସ୍ଥାନରୁ ଉଠିଆସି ହାତଧରି ନେଇ ଅପଣା ବସିବା ସ୍ଥାନରେ ବସାଉଥିଲେ, ଏବେ ଧନପତିଙ୍କର ଅନୁ ସେ ଭାବ କାହିଁ ?— ଦଣ୍ଡାଏ କାଳ ବସିଲେବ ହିଁକଏ ଅନାଇବାକୁ ନାହିଁ । କେବଳ ଅଣ ଟଙ୍କା— ଅଣ ଟଙ୍କା । ଟଙ୍କାତ ତୁମ୍ଭର କେହି ଖାଇ ଯାଉ ନାହିଁ — ଯାହା ଉଚିତ ହେଲା ହେସାବ କରି ସଜ୍ଜାଳ କରି ଦଅଁଯିବ । ମାଛ ମାନୁଛି କଏ ? ତେତେବେଳେତ ବିଶ୍ୱାସ କରି ତମସୁକ ଲେଖିଦେଲୁଁ— କଏ ଜାଣିଥିଲା ଏତେ ବିଶ୍ୱାସଘାତକତା କରି ଚକ୍ରବୃଦ୍ଧି ସୁଧ ଲେଖିନେବ ? ତେତେବେଳେ କେତେ କୋମଳ କରି

କହୁଥିଲେ ଟଙ୍କାଏ କରି ସୁଧ ନେବେ— ଏତେବେଳେ
ସେ କଥା କହିଲାବେଳକୁ ନାମୁଡ ଗୋଡ଼ାଉଛନ୍ତି ! ଓହୋ !
କି ଦୁଷ୍ଟତା ! ତେତେବେଳେତ ହୁଣ୍ଡିକୁଁ ଏତେବେଳେ ଭାବିଲେ
କିସ ହେବ ? କେବଳ କହିଲେ ଏ ସବୁ ବିଷୟର ପ୍ରମାଣ
ଦିଅଯାଇ ପାରିବ ନାହିଁ ।— ପ୍ରମାଣ ଦେଲେ ଅବା ଶୁଣୁଛି
କିଏ ? ହାକିମତ ଦେଖିବେ ଅମ୍ଭେ ଦସ୍ତଖତ୍ କରି ରେଜ-
ଷ୍ଟ୍ରୀ କରି ଦେଇଛୁଁ — ଆଉ କ ବୁଝି ସୁଝି ଏହା କରିଛୁଁ
ବୋଲି ସେ କି ବିଶ୍ୱାସ କରିବେ ? ସବୁ ଆମ୍ଭର କପାଳ-
ଦୋଷ ।— ଦେଖାଯାଉ ଥରେ ମହାଜନର ଗୋଡ଼ ଧରିବଁ —
ଯଦି ଖଣ୍ଡିଏ ସମ୍ପତ୍ତି ଛାଡି ଦେଇ ଆଉ ସବୁ ସମ୍ପତ୍ତି ନେଇ
ଆମ୍ଭଙ୍କୁ ଖଲାସି ଦିଅନ୍ତି ।  ( ପ୍ରସ୍ଥାନ । )

[ ଅଦୃଷ୍ଟ-କୁମାରୀଗଣଙ୍କର ପ୍ରବେଶ ।

ଅ, କୁ ।— ( ନୃତ୍ୟ ସହିତ ଗୀତ । )

ରାଗିଣୀ ବେହାଗ । ତାଳ ଅଡ଼ଖେମଟା ।

ଭାବିଲେ ଆଉ କି ହେବ ପାଇଲିଣି ସୁଖ-ଦଶା ।
ବୁଦ୍ଧି ହଜାଇ ବେଳସୁଁ ଉପସ୍ଥିତ ଘନଦଶା । ଦୋଷା ।
ଋଣପତ୍ରରେ ସ୍ୱାକ୍ଷର ଅଟଇ ଅତି ସରଳ—
ପାଠ ହେଲେ ଅଦାଲତେ ବୁଡ଼ଇ ଆଶା ଭରସା । ୧ ।
ସେହି ଧର୍ମାଧିକରଣେ, ପଣ୍ଡା ପ୍ରତିହାରିଗଣେ,
ଧନକୁ କରନ୍ତି ସ୍ୱତ୍ୱ ରକ୍ଷକ ଦିନ ସହସା । ୨ ।
ଅସତ୍ୟ ଅସତ୍ୟ ସତ୍ୟ, ସତ୍ୟ ହୁଅଇ ଅସତ୍ୟ—
କଣ୍ଠର କଷ୍ଟିର ଏଥୁଁ ଜଳଭ୍ରମେ ମୃଗତୃଷା । ୩ ।

ଯବନିକା ପତନ ।



# ଚତୁର୍ଥ ଅଭିନୟ ।

## ପ୍ରଥମ ଦୃଶ୍ୟ — ଇଜଲାସ ।

[ ମିସଲରେ ଅଲ୍ଲାସାହେବ ଚୌକି ଉପରେ ଉପବିଷ୍ଟ । ଦକ୍ଷିଣ-ପାର୍ଶ୍ୱେ ଅମଲା ଓ ନାଜର ବେଞ୍ଚ ଉପରେ ଉପବିଷ୍ଟ ଓ ତତ୍ପୃଷ୍ଠରେ ଚପରାସିମାନେ ଦଣ୍ଡାୟମାନ । ବାମପାର୍ଶ୍ୱରେ କଟଘର ସମ୍ମୁଖଭାଗରୁ ଚିନ୍ତାମଣି ନନ୍ଦ ପ୍ରଭୃତି ଓକିଲମାନେ ବେଞ୍ଚ ଉପରେ ଉପବିଷ୍ଟ ଓ ତତ୍ପୃଷ୍ଠରେ ଧନପତି, ସଦାନନ୍ଦ ପ୍ରଭୃତି ଅନେକ ଲୋକେ ଦଣ୍ଡାୟମାନ । ]

**ଅଲ୍ଲା ।**—( ନାଜରକୁ ଅନାଇ ) ସବୁ ନାଲିସ ଶେଷ ହେଲ—ନା କବଲେ—ହାଲ୍ଲା ? ( ଓକିଲଙ୍କୁ ଅନାଇ ) ଏ ଉଡ଼େଟା ଏଖନ ଓ ଭାଲ ହୟେ ହଛେନା ।

**ପ୍ରଧାନ ଓକିଲ ।**—ତବୁ ହଜୁର ଖୁବ ଶିଗ୍‌ଗିର ଶିଖେଛେନ୍—କେନ, ବେଶ୍ ବଲଛେନ୍ ତ ! ଏଇ ଏକ୍‌ଟା ଅଦ୍‌ଟା କୋଥାୟ୍ ଲେଗେ ଯାଚ୍ଛେ ବୈ ତ ନୟ । ଏଇତ ବଛର ଖାନେକ ଆସା ହୟେଛେ—ଏତ ଶିଗ୍‌ଗିର କାରୁକେ ଏତ ଭାଲ କରେ ଉଡ଼େ ଶିଖ୍‌ତେ ଆମି ଦେଖିନି ।

**ଅଲ୍ଲା ।**—ହାଁ ଏକ୍‌ଟା ଅଦ୍‌ଟା ଲାଗ୍‌ଚେ ବୈ କି—ଆର ତୁମାସେ ଶିଖେ ଫେଲ୍‌ବ—କେମନ ?

**ପ୍ର, ଓକ ।**—ତୁମାସ କେନ ହଜୁର—ଯେମନ ହୟେଛେ ହନ୍ ପନ-ରଟାର ମଧ୍ୟେ ବେଶ ହୟେ ଯାବେ ।

**ଅଲ୍ଲା ।**—ହାଁ—କେନ ହବେନା ?—ହିନ୍ଦୁସ୍ଥାନେ ହିନ୍ଦୁକଥା ଛମାସେ ଶିଖେ ଫେଲ୍‌ଲୁମ ।—ଉଡ଼େଟା ତୁମାସେର ବେଶି ଲାଗାତ ଉଚିତ ନୟ । ଖତ ମନୋଯୋଗ ଦେଓୟା ଯାୟନା ଏଇ ଅଭ କା ।

ସୁ, ଓକ ।—ତା ବୈ କ । ହଜୁର ଯଦ ମିସଲେ କେବଲ ଭୂଡ଼ି କଥା ବଲେନ ତା ହଲେ ଦନ ଅକ୍ଷେକେର ମଧ୍ୟେ ଠିକ ହୟେ ଯାବେ ।

ଅଲ ।—( ନାଜରକୁ ଅନାଇ ) ସବ୍ ନଲାମ ଶେଷ ହୋଇଲ—କ ବଲେ—ଘେଇଲ ?

ନାଜ ।—ସବୁ ହୋଇଗଲା—କେବଲ ଧନପତଭ୍ରମ ଉତ୍ରୋଦାର ଚୌଧୁରୀ ସଦାନନ୍ଦ ପଟ୍ଟନାୟକ ଦେଣଦାରର ନଲାମ ବାକୀ ଅଛି ।

ଅଲ ।—ତାଙ୍କ କିର ଫେକାଅ ।

ଚନ୍ଦ୍ରା ।—( ଦଣ୍ଡାୟମାନ ହୋଇ ଦରଖାସ୍ତ ଖଣ୍ଡିଏ ବଢ଼ାଇ ଦେଇ ) ହଜୁର ଆମୁକ ଖଣ୍ଡିଏ ମହଲତ ଦରଖାସ୍ତ ଏହି ନଲାମ ବନ୍ଦ କରିବା ସକାଶେ ଦେବାକୁ ଅଛି । ଦୁଇମାସ ମହଲତ ମିଳିଲେ ସମ୍ପତ୍ତି ଅନ୍ୟଠାରେ ବନ୍ଧକ କରି ଟଙ୍କା ଅଦାୟ କରିଦେବୁଁ । କୋଡିଏହଜାର ଟଙ୍କା ସଦରଜମାର ସମ୍ପତ୍ତି ମୂଲ୍ୟ ହୋଇଛି —ଏକଲକ୍ଷ ପଚଶ ହଜାର !

ଅଲ ।—ଉତ୍ରୋଦାରେର ମଞ୍ଜୁର ଅଛି ?

ଚନ୍ଦ୍ରା ।—ଉତ୍ରୋଦାର ମିଠାଇଖିଆ ଦଶହଜାର ନ ନେଲେ ମହଲତ ଦେଉ ନାହାନ୍ତି । ମଓକଲର ତ ଖାଇବା ପିଇବା ମୁସକିଲ ହୋଇ ଅସିଲାଣି ସେ ଦଶହଜାର କାହୁଁ ପାଇବ ।

ଅଲ ।—କଛୁ ଟଙ୍କା ଅସୁଲ ଦାଉଚ ?

ଚନ୍ଦ୍ରା ।—ହଜୁର ମହଲତଟା ହେଲେ ସବୁଟଙ୍କା ଅସୁଲ ହୋଇଯିବ —ବର୍ତ୍ତମାନ କଛି ନାହିଁ ।

ଅଲ ।—ତା ଅମି କ କରବେ ।—ଉତ୍ରୋଦ ଛମାସ ମହଲତ ହୋଇଲା ଟଙ୍କା ଅଦାୟ ନା ହଲ—ଗତ ତାରଖେ ଏକବାର ମହଲତ ଦଅଇଲେ ତେବେ ଟଙ୍କା ନା ହେଲ—ଅମି ଅର ମହଲତ ଦବେ ନା ।—ନା, ନଲାମ କର ।

ଅମଲା ।—( ଚିନ୍ତାମଣି ହସ୍ତରୁ ଦରଖାସ୍ତ ନେଇ ଛେଣିକର ହାକିମ ହସ୍ତେ ଅର୍ପଣ ।)

ସଦା ।—( ଲମ୍ବଭାବେ ପତିତ ହୋଇ ) ଧର୍ମାବତାର, ହଜୁର ମା ବାପ, ମହାଲତ ନ ଦେଲେ ମୁଁ ମରଗଲି । ଏ ମହାଜନ କିଛି ଶୁଣିଲା ନାହିଁ — ମୋର ସର୍ବନାଶ କଲା ।

ଧନ ।—( ଯୋଡହସ୍ତେ ) ହଜୁର ଏ ଭାରି ଦୁଷ୍ଟ ଜୁଆଚ୍ଚୋର — ମୋର ଟଙ୍କା ନ ଦେଇ ବଡ଼ ହଇରାଣ କଲାଣି — ମୋର ମହ-ଲତରେ ମଞ୍ଜୁର ନାହିଁ ।— ମୁଁ ଏତେବେଳଯାଏ ଖାଇ ନାହିଁ !

ସଦା ।—( ଉଚ୍ଚସ୍ୱରେ ) ହଜୁର ମା ବାପ, ହଜୁର ଧର୍ମାବତାର !— ସେ ମୋତେ ଖାଇବାପାଇଁ ଅସିଛି !

ଅଲି ।—( କ୍ରୋଧେ ) ଅରେ ମଲ ଏଟା ଅବାର ଏତ ଲମ୍ବାହସ୍ତେ ପଡ଼ିତେ ଜାନେ — ଓଠ୍ !

[ ତପସ୍ୱିମାନଙ୍କର ଦଉଡି ଅସି ସଦାନନ୍ଦଙ୍କୁ ଭୂମିରୁ ଉତ୍ତୋଳନ ।

ସଦା ।—( ଦଣ୍ଡାୟମାନ ହୋଇ କର ଯୋଡ଼େ ) ହଜୁର ଶରଣ, ହଜୁର ଶରଣ !

ଅଲି ।—( ଦରଖାସ୍ତ ପୃଷ୍ଠେ ଲେଖି ଅମଲା ହାତକୁ ଦେଇ ) ନା ତୁମାର ଦରଖାସ୍ତ ନାମଞ୍ଜୁର ହେଲ ।— ଡାକ — ନିଲାମ କର ।

ତପସ୍ୱି ।— ଷ୍ଟେପ୍ ଷ୍ଟେପ୍ ।

ନାଜ ।—ଖଣ୍ଡିଏ କାଗଜ ଧରି ଉଚ୍ଚୈଃସ୍ୱରେ ) ସନ ଅଠରଶ ଉଂ-ନେଶତ ମସିହା ସାତଶ ନବେ ନମ୍ବର ଡିକ୍ରିଜାରି ଧନପତି ରାମ ଭଗତ ଡିକ୍ରିଦାର ବୈଁ ଧୁସ୍ତ ସଦାନନ୍ଦ ପଟ୍ଟନାୟକ ଦେଣ-ଦାର ଜିଲା କଟକ ଅନ୍ତର୍ଗତ ପରଗନେ ମହାମଣ୍ଡଳ ତାଲୁକେ ସୁବର୍ଣ୍ଣପୁର ଜମିଦାରୀ ବ ଯହିଁର ସଦରଜମା କୋଡିଏ ହଜାର ଟଙ୍କା ଅଟେ ତହିଁ ପକ୍ଷେ ଦେଣଦାରର ଯେ ସ୍ୱତ୍ୱ ଲାଭ ଅଛି ତାହା ଏ ମୋକଦମାରେ ନିଲାମ ହେଉଅଛି ।— ସରକାରି ଡାକ ହୋଲାଖ୍ ।

ଚପ ।—( ଉଚ୍ଚୈଃସ୍ୱରେ ) ଦୋଲ୍ଲଖ୍—ଦୋଲ୍ଲଖ୍ ।

ଧନ ।—ଏକ ଲକ୍ଷ ପଚଶ ହଜାର ।

ଜଟୈକ ।—ଏ ଗୋଟାଏ ଓଚ୍ଚଲ ବ କ୍ଷର ନାହିଁ—ଅପେ ଭାବ ମବୁଛ ।

ଜଟୈକ ।—ସେନ୍ତୁଟା ହାଡ଼ିଙ୍କ ସରଦାର ।

ଚପ ।—ଏକ ଲକ୍ଷ ପଚଶ ହଜାର, ଏକ ଲକ୍ଷ ପଚଶ ହଜାର ।

ନାଜ ।—ଅଉ କେହି ଡାକବ ?—ଏକ ଲଖ ପଚଶ ହଜାର ଏକ ।

ଚପ ।—ଏକଲକ୍ଷ ପଚଶ ହଜାର ଏକ, ଏକଲକ୍ଷ ପଚଶ ହଜାର ଏକ ।

ନାଜ ।—ଏକଲକ୍ଷ ପଚଶ ହଜାର ଦୋ ।

ଚପ ।—ଏକଲକ୍ଷ ପଚଶ ହଜାର ଦୋ, ଏକଲକ୍ଷ ପଚଶ ହଜାର ଦୋ ।

ଚାଲ୍ସ ।—ଅର କୋଉ ଡାକବା ?

ନାଜ ।—ଅଉ କେହବ ଡାକୁ ନାହାନ୍ତ ।

ଚପ ।—ଏକଲକ୍ଷ ପଚଶ ହଜାର ଦୋ, ଏକଲକ୍ଷ ପଚଶ ହଜାର ଦୋ ।

ଅଲ୍ଲ ।—ଦେଖୋ ଭିନ୍ ହୁଅ—

ଚପ୍ ।—ଏକଲକ୍ଷ ପଚଶ ହଜାର ଦୋ, ଏକଲକ୍ଷ ପଚଶ ହଜାର ଦୋ ।

ଅଲ୍ଲ ।—( ଟେବିଲରେ ହାତମାର ) ଭବେ, ଭବେ, ଭିନ୍ ।

ଚପ୍ ।—ଏକଲକ୍ଷ ପଚଶ ହଜାର ଭିନ୍ ।

ନାଜ ।—( ଅଲ୍ଲ ସାହେବ ହସ୍ତେ କାଗଜ ଖଣ୍ଡିକ ସମର୍ପଣ ।)

ଅଲ୍ଲ ।—(କାଗଜରେ ଦସ୍ତଖତ କର ନ.ଜରଙ୍କୁ ପ୍ରଦାନ । )

ନାଜ ।—( କାଗଜ ଖଣ୍ଡିକ ରଖିଦେଇ ଅନ୍ୟ କାଗଜ ନେଇ ଉଚ୍ଚୈଃସ୍ୱରେ ) ସନ ଅଠରଶ ଉନେଶତ ମସୀହା ସାତଶ

ନବେ ନମ୍ବର ଡିକ୍ରିଜାରୀ ଧନପତ୍‌ରାମ ଭଗତ ଡିକ୍ରିଦାର ଶେଖ୍-
ଧୁସ୍ରୀ ସଦାନନ୍ଦ ପଟ୍ଟନାୟକ ଦେଣଦାର ଜିଲ୍ଲା କଟକ ଅନ୍ତ-
ର୍ଗତ ପରଗଣେ ମହାମଣ୍ଡଲ ତାଲୁକେ ସୁବର୍ଣ୍ଣପୁର ଷାଠିଏ
ହଜାର ସାତଶ ସତସ୍ତରି ନମ୍ବର ଜନେରଲ ବାବତ ପଚ୍ଚଶ
ବାଟି ଲଷରାଜ ବାହାଲ ବୃତ୍ତି କ ଯହିଁ ପକ୍ଷେ ଦେଣଦାରର
ନାମ ସାତ ଅଇନ ମତେ ଦାଖଲ ଖାରଜ ହୋଇଅଛି ମଏ
ତହିଁରେ ଥିବା ଦେଣଦାରର ପଚ୍ଚଶ ବଖରା ପକ୍କା ଓ ଦେଢ଼ଶ
ବଖରା କାହ୍ନ ଘର ଓ ବଗିଚା ଓ ପୋଖରୀ ଓ ପଥର ପାଚେରୀ
ଓଗେର ତହିଁ ପକ୍ଷେ ଦେଣଦାରର ଯେ ସ୍ୱତ୍ୱ ଲାଭ ଅଛି
ତାହା ଏ ମୋକଦମାରେ ନିଲାମ ହେଉଅଛି ।—ସରକାରୀ
ଡାକ ଏକଲାଖ ରୁପେୟା ।

ସଦା ।—( କର ଯୋଡେ କାନ୍ଦି ) ହଜୁର ଲକ୍ଷେ ପଚିଶ ହଜା-
ର ଅସୁଲ ହୋଇଗଲା—ତାହାଙ୍କୁ ଦୁଇମାସ ମହଲତ ଦିଆ-
ଯାଉ—ହଜୁର ଧର୍ମାବତାର !

ଅଲ ।—ନା ନା ଅମି ଗୁଟିଏ ଦିନର ତରେ ମହଲତ ଦବେ ନା ।

ସଦା ।—( ପୂର୍ବବତ୍ ) ହଜୁର ଧର୍ମାବତାର—ହଜୁର ଧର୍ମାବତାର !

ଧନ ।—ହଜୁର ସେ ଭାରୀ ଦୁଷ୍ଟଲୋକ—ମୋ ସଙ୍ଗେ ଭାରୀ ଦଗା-
ବାଜୀ କରିଛି ।

ସଦା ।—( ରୁଷ୍ଟଭାବେ ) କେମନ୍ତ ?—ଆମ୍ଭେ ଦଗାବାଜୀ କଲୁଁ ?
ଆପଣ ତ ମୋର ସର୍ବନାଶ କଲେ । ହେଉ—ଈଶ୍ୱର ଅଛନ୍ତି—
( କର ଯୋଡେ ହାକିମଙ୍କୁ ) ହଜୁର ମାସକପାଇଁ ମହଲତ
ଦିଅନ୍ତୁ ।

ଅଲ ।— ଏକ ମୁହୂର୍ତ୍ତେର ସବ୍ରାଣେ ନାହିଁ ।— ଅମି ମହଲତ
ଦବେ ନା—ଡାକ ନିଲାମ ।

ଚପ ।— ସରକାରୀ ଡାକ ଏକ ଲାଖ ରୋପେୟା ।

ଧନ ।— ପଚିଶ ହଜାର ।

ଚପ ।—ପଚିଶହଜାର, ପଚିଶହଜାର ।

ନାଜ ।— ବଢ଼ ବଢ଼—ଆଉ କଏ ଡାକିବ, ବଢ଼ ।

ଚପ ।— ପଚିଶହଜାର, ପଚିଶହଜାର ।

ନାଜ ।— ପଚିଶହଜାର ଏକ—ଡାକ, ଡାକ ।

ଚପ ।— ପଚିଶହଜାର ଏକ, ପଚିଶହଜାର ଏକ ।

ନାଜ ।— ପଚିଶହଜାର ଦୋ—ଡାକ ଡାକ ।

ଚପ ।— ପଚିଶହଜାର ଦୋ, ପଚିଶହଜାର ଦୋ ।

ଅଲି ।— ଆଉ କୋଇ ଡାକିବା ନାହିଁ ।

ନାଜ ।— ନାହିଁ ଆଉ କେହି ଡାକିଲା ପର ବଶ ନାହାନ୍ତି ।—ମୁଁ ତ ଡାକ କରଇଥିଲି ପଚିଶହଜାରକୁ କେହି ବଢ଼ିଲେ ନାହିଁ ।

ସଦା ।— ( କରଯୋଡ଼େ ) ହଜୁର ମହଲତ ନ ଦେଲେ ଅମ୍ଭେ ସଉପିବୁଁ—ଶାଗ-ମାଛ-ଦରରେ ସମ୍ପତ୍ତି ସବୁ ଚାଲିଯାଉଛି । ଜମି ତ ନୁହେଁ ସୁନାର ଥାଳ—ତିନିଲକ୍ଷ ଟଙ୍କାର ବିଷୟ ।

ଧନ ।— ( କର ଯୋଡ଼େ ) ହଜୁର ଭାରି ଚଢ଼ା ଦାମ ହୋଇଗଲା—ଭାରି ମହରଗ ହେଲା—ମାଣ ପଚିଶ ଟଙ୍କା ପଡିଗଲା ।—ଜମି ଭାରି ନୀରସ—ବାଲିଚର ।

ଚପ ।— ପଚିଶହଜାର ଦୋ, ପଚିଶହଜାର ଦୋ ।

ଅଲି ।— ଆଉ କୋଇ ଡାକିବା ନାହିଁ ?—ତିନ୍ ।

ଚପ ।— ପଚିଶହଜାର ତିନ୍ ।

ନାଜ ।— ( କାଗଜ ଖଣ୍ଡିକ ହାକିମ ହସ୍ତେ ଅର୍ପଣ । )

ଅଲି ।— ( କାଗଜରେ ଦସ୍ତଖତ କରି ନାଜରଙ୍କୁ ପ୍ରଦାନ ) ।

ପ୍ର—ଓକ ।— ( ଚନ୍ଦ୍ରମଣିଙ୍କୁ ଅନାଇ ) ସଦାନନ୍ଦ ବାବୁର ଦଫା ଏତେଇ ନବେସ ।—ଆମି ଯତ କରେ ବଲ୍ଲୁମ କ୍ଷୀଣ-ଭାଣ୍ଡାରେର ପରାମର୍ଶମତ ମାମଲା ଲଡ଼ିଲେ ଦେଖାଯାବେ—କତୁ-ଚେଇ ହଲେନା ।

ଚନ୍ଦ୍ରା ।— ସେ ମହାଜନ ଭାଗ୍ୟ ଦୁଷ୍ଟ ।— ଢେର ଢେର ମହାଜନ ଦେଖା ଅଛୁ—ଏମନ୍ତ ସଢ଼ ପୃଥିବୀରେ ନାହିଁ !

ଅନନ୍ତ ।— ଆଉ କଛି କାଜ ନାହିଁ—କରେଣ୍ଟ ବରଖାସ୍ତ । ( ଚୌକୀରୁ ଉଠେ ଦଣ୍ଡାୟମାନ ।

[ଓକିଲ ଅମଲା ସମସ୍ତେ ଦଣ୍ଡାୟମାନ ଓ ପଟ ପରିବର୍ତ୍ତନ ।

---

ଦ୍ୱିତୀୟ ଦୃଶ୍ୟ ।— ଅନ୍ତଃପୁର ।

[ ବନ୍ଧୁପ୍ରିୟା ଆସି ଏକାକିନୀ ଉପବିଷ୍ଟା । ]

ବନ୍ଧୁ ।— (ସ୍ୱଗତ) ବନ୍ଧୁଙ୍କ ମୋର ହାବ । ନଅ ମାସ ଆସି ପୂରିଯିବାକୁ ବହିଲଣି ତଥାପି ହାଣ୍ଡିଶାଳ ଛଡ଼ିବ ନାହିଁ । ଏତେ ଭାଷ ମାସରେ ବି କୂଅରୁ ପାଣି କାଢ଼ିବାକୁ ଛଡ଼ିବ ନାହିଁ କି ମୋତେ ପଡ଼ିଆ ହରଣ୍ଡ କାଟିବାକୁ ଦେବ ନାହିଁ । ମୋ ବନ୍ଧୁ ଜାଣେ —କାମ ସାଉ ବସ-ଶତ୍ରୁମାର ବସ । ମୋର ବନ୍ଧୁର ସମସ୍ତେ ଧୋଉଣ୍ଡ ହଅନ୍ତୁ —ତାଙ୍କୁ ପରମେଶ୍ୱର ସହାୟ ହୁଅନ୍ତୁ — ଲକ୍ଷ୍ମୀ ମୋର କାର୍ତ୍ତିକ ପର ପୁଅ ଜନ୍ମ କର ସୁଖରେ ହକ ସାରୁ !

[ ସାଧବୀ-ମାର ପ୍ରବେଶ ।

( ପ୍ରକାଶ୍ୟେ ) କି ଗୋ ସମୁଦୁଣି କୁଆଡ଼େ ? ଏତେ ଦିନେ ମନେ ପଡ଼ିଲା କିମନ୍ତ ? ( ହୁଳହୁଳୀ ପ୍ରଦାନ । )

ସା.ଧ ।— ଆଉ କଣ ପଚାରୁଚ ? ବନ୍ଧୁର ଭାଇ ଦେହରେ ସୁଖ ନ ଥିଲା ବୋଲି ଏତେ ଦିନ ଗଡ଼ିଗଲା—ଶୁଣି ଥିବତ ।

ବନ୍ଧୁ ।— ହଁ ମୁଁ ଶୁଣିଚି ।—ଦେହ ଭଲ ହେଲାଣି ନା ?

ସାଧ । ହଁ ଟିକିଏ ଭଲ ହେଲାକୁ ପଦ ଦଉଡ଼ିଚି ।

[ ବଳା ବେହେରାର ଭାର ସହିତ ପ୍ରବେଶ ।

ବନ୍ଧୁ ।—(ହୁଳହୁଳୀ ଦେଇ ) ଭାର ତ ହାଲୁକା ଦିଶୁଚି !

ବଳା ।— ନାହିଁ ସାଆନ୍ତାଣି, ଖଦଡ଼ ଭାର—ମୋତେତ ଅଧଣ୍ଟ

ଦେହାଇଣ୍ଟୁ ।—( ଭାର ତଳେ ଥୋଇ ଏକ ପାର୍ଶ୍ୱରୁ ହାଣ୍ଡି ଓ ଅପର ପାର୍ଶ୍ୱରୁ ନଡ଼ଆ-କଦଳୀ-ପୁଞ୍ଜି ଟୋକାଇ ନେଇ ବଣ୍ଟୁ-ପ୍ରିୟା ନିକଟରେ ସଂରକ୍ଷଣ । )

[ ହଠାତ୍ ରତ୍ନମଞ୍ଜରୀର ପ୍ରବେଶ ।

ରତ୍ନ ।—(ସାଧବୀମାଆର ବେକ ଧରି ସକସକ ହୋଇ କାନ୍ଦୁ୨ ଧୀରେ୨) ଏତେ ଦିନେ ବୋଉ ମୋତେ ମନେ ପକେଇଲୁ ?—ମୁଁ ମରିବି କି ଜୀଇବି କି ଠିକଣା ଅଛି ?

ସାଧ ।—( କାନ୍ଦୁ ୨ ଧୀରେ ୨ ) କଅଣ କରିବି ଲୋ ମା— ତୋ ଭାଇ ଦେହରେ ଅଡ଼ବେକ ହୋଇ ଯାଇଥିଲା ! କେତେ ବଇଦ—କେତେ ଗୁଣିଆ ଫାଟିପୁଟି ଗଲେ ! ଦେହ ଟିକିଏ ଫୁରୁସତ ହେବାରୁ ବୋହିତ ଲଣ୍ଡଭଣ୍ଡ ହୋଇ ମୋତେ ପଡ଼ିଠିଲି ହେଲାଣି !—ଛି କାନ୍ଦନା ! ଠାକୁରେ ଅଛନ୍ତି ତୋତେ ରକ୍ଷା କରିବେ । ମୁଁ ଭଲ ପିଠା ବସେଇ ଆଣିଛି—ତୁ ଥିଲୁ ଦିନେ ଯେଉଁ ପିଠାକୁ ଭାରି ଶରଧା କରୁଥିଲୁ ସେହି-ପରି ପୋଡ଼ପିଠା କରି ଆଣିଛି ! ମୁଁ ଅଛି ଗୁରୁଦିନ—କାନ୍ଦନା ମୋ ମା ! ଛି ଭୁଜବୋ—ମୋ ମା—ମୋ ଲକ୍ଷ୍ମୀ ! ତୁ ତ ସାଧବ ଘର ବହୁ—ଶାଶୁ ତୋର ମାଠୁ ବଳି ତୋତେ ଦେ-ଖିପାରେ ! ତୋର କାହିଁ କଥାକୁ ଚିନ୍ତା ?—ସାତ ପୁଅର ମା ହେଇ ତୁ ଘର ଦୁଆର କର ।—ଆମେମାନେ ତୋର କଥାରେ କେମିତି ଚାଲି ଯାଉଁ !—ଭୁଜ ହେ, ମୁଁ ଖାରନ୍ଦ-ଠାକୁରାଣୀଙ୍କ ସୁନ୍ଦର ଆଣିଛି—ତୋ ଶାଶୁକୁ ଦିଏଁ ସେ ନାଇ ଦେବେ । ( ଆପଣା ଅଞ୍ଚଳରେ ରତ୍ନ ମଞ୍ଜରୀର ଲୋତକ ମୋଚନ । )

ରତ୍ନ ।— ( ତଦ୍ରୂପ କାନ୍ଦୁ୨ ଧୀରେ୨ ସାଧବୀମାକୁ ଖଡ଼ ଠିଆ ହୋ-ବାର । )

ସାଧ ।— ( କାନକୁ ହିନ୍ଦୁର ପତ୍ର ଫିଟାଇ ବିଷ୍ଣୁପ୍ରିୟାହସ୍ତେ ପ୍ରଦାନ କରି ) ନିଅ, ଝିଅକୁ ଶାରଳାଙ୍କ ସୁନ୍ଦର ନାଇଦଅ ।

ବିଷ୍ଣୁ ।— ( ଦଣ୍ଡାୟମାନ ହୋଇ ଶାରଳା ଦେବୀଙ୍କ ସିନ୍ଦୂର ରତ୍ନ ମଞ୍ଜରୀର ସୀମନ୍ତରେ ଲଗାଇ ଦେଉଁ ଦେଉଁ ) ମା ଶାରଳା ତୁମ-କୁ ରକ୍ଷା କରନ୍ତୁ —ତୁମେ ସାତ ପଅ କୋଡ଼ରେ ନେଇ ଘର ଦୁଆର କର !—ସାଧବୀମା ! ବନ୍ଧୁ ଦେଇଚ ନା ମୋ-ତେ, ଏ ସାତଖଣ୍ଡି ଗ୍ରାମକୁ ପତ୍ର ବାହାର !—ବନ୍ଧୁ ତ ନୁହେ— ହୀରା ଖଣ୍ଡିଏ ପତ୍ର । ସେତ ବଦନଶ୍ରିଭ ଚରଣି ପତ୍ର ଭୁଲନ୍ତ ! ମୁଁ ଯେତେ କହିଲ "ବନ୍ଧୁ ଛଅ ମାସ ହେଲାଣି ଟିକଏ ରହି ସହି କାମ କର" କିଏ ଶୁଣୁଚି—ଅଭେଇ ହୋଇ କହିବ "ମୋତେ ଭଣ୍ଡା ଜଣାଗଲେ ମୁଁ ଅପେ ରହିବ ନାହିଁ ।" ହେଲା ? ଏ କଥାକୁ ମୁଁ ଆଉ କଣ କହିବ ?

ସାଧ ।—ହଁ—ଆମେ ସବୁ ଶୁଣୁଁ । କାମ ନ କରିବାତ କରିବ କଣ ? ଝିଅର ଯଶ ଶୁଣିଲେ ମନ ଯେମନ୍ତ ହୁଏ ଜାଣତ । ବୋଉତ ତାର ମନକୁ କୁଣ୍ଢେଇ ଚେଷ୍ଟ କର ଦିଏ—ଆଉ ମୁଁ ଗାଁ ଆ ଯାକ ବାର୍ତ୍ତା କହି ବୁଲେଁ । ସେ ଯାହା ହେଉ ତୁମପରି ଶାଶୁ ଏକା ମିଳିବ ନାହିଁ ! ମୁଁ ତେର ତେର ଦେଖିଚି— ବହୁକୁ ନେଇ ଏମନ୍ତ ସଜରେ ଏମନ୍ତ କଟକଣାରେ କିଏ ଘର କରଚି ?

ବିଷ୍ଣୁ ।— (ଦୀର୍ଘ ନିଃଶ୍ୱାସ ପକାଇ) କଅଣ କରିବ ସାଧବୀମା, ମୋର ସବୁ କଥା ସରିବାକୁ ବସିଚି !— ସମୁଦ୍ର ସମୁଦୁଣୀ ଭଲ ଅଛନ୍ତି ?

ସାଧ ।—ହଁ ସମସ୍ତେ ଭଲ ଅଛନ୍ତି । ସମୁଦୁଣୀ ତେର ତେର କରି କହି-ଚନ୍ତି ।— ସାଆନ୍ତଙ୍କ କଥା ଆମେ ସବୁ ଶୁଣିଚୁଁ । ସେଥି ଯୋଗୁଁ ସମୁଦୁଣୀଙ୍କିତ ଭାତ ରୁଚୁ ନାହିଁ । ତେଣେ ପୁଅଟି

ଦେବ ଅସ୍ତଣ ଏବେଣ ହିଁଅର ଶ୍ୱଶୁରଙ୍କ କଥା ଶୁଣି କାନ୍ଦିବ କା ଭାତ ଖାଇବ । ଭାତ କଣ୍ଠରେ ବସିଲେତ କାନ୍ଦ ବୋବେଇ ବ ମାତ୍ର ଅଇଣ୍ଠା ହୋଇ ଉଠିଯାନ୍ତି ! ବାର ବାର କହ ମୋ ହାତରେ ପଶୁ ଉଠନ୍ତି ଋଣ କଥା କଅଣ ହେଲା ବୁଝି ଅଛିରୁ ।

ବୈଷ୍ଣ । — ଅଉ ବୁଝିବ ଛଇ ପାରୁଁଛ ? ଘର ବୁଡ ପାଣି ଆସିଏ ହେଁ ଲାଣି — ସାଆନ୍ତଙ୍କ ପେଙ୍କା ଝିଅ କ ଛଡ଼ା ଯାଇଚ ? କ ଭାଗ୍ୟ ଅଙ୍କ କଟରକ ଯାଇଚନ୍ତି — ମହଲତ ଆଣି ଋଣ ଶୁଝିବେ ! — ସବୁତ ଯିବ — ଖାଲି ଏ ଘର ଖଣ୍ଡିକ ରହି ଯାଏ କ ! ଅଟନ୍ତୁଁ ସବୁ ବାହାରଥିଲେ କ ହେଇ ନ ଥାନ୍ତା ? — କାଲିକ ବସି ରହିଲେ — ଏବେ ଅଷାଢ଼ ମାସରେ ଘସି ପଶ ହେଉଚ ! — ମୋ କପାଳ !!

ସାଧ ।—( ପାଟିରେ ଅଙ୍ଗୁଳି ଦେଇ ) କଅଣ କହୁଚ — ଏତେ ସବୁକ କଥା ଗଲାଣି ?

ବୈଷ୍ଣ ।—ଅଉ ପଶୁ ବୁଚ କଅଣ ! ସେତିକ ରହିଗଲେ — ଏହି ଘର-ଖଣ୍ଡିକ ରହିଗଲେ ଘର ପୋଡିବୁ ଯାହା ରହିଗଲା ସହି ! ଆଉ କଅଣ କରିବ ? ଶନିଙ୍କ ଦଶା ପଡିଚ — କପାଳରେ ଯାହା ଥିବ ।

[ ଶଶବ୍ୟସ୍ତ ହୋଇ ରତନ ବାଉକର ପ୍ରବେଶ ।

କରେ ରତନ, ମହଲତ ହେଲା ?

ରତ । — ନାହିଁ ସାଆନ୍ତାଣି, ହାକମ ମାନିଲେ ନାହିଁ । — ( ମୁଣ୍ଡରେ ହାତ ଦେଇ ) ସବୁତ ସଇଲା ( କ୍ରନ୍ଦନ ) ।

ବୈଷ୍ଣ । — ( ବ୍ୟସ୍ତଭାବେ ) କରେ କଣ ହେଲା କହ ?

ରତ । — (କାନ୍ଦୁ)ଅଉ କଣ ମୁଣ୍ଡ କହିବ — ସବୁ ସଇଲା !(କ୍ରନ୍ଦନ ।)

ବୈଷ୍ଣ । — ( ଅତି ବ୍ୟସ୍ତଭାବେ ) ଆରେ କଅଣ ହେଲା କହ — — ନିଲାମ ହୋଇଗଲା ?

ଲତ ।—( କାନ୍ଦି ) ହଁ ସାଆନ୍ତାଣି, ସବୁ ନିଲାମ ହୋଇଗଲା ।

ବଣ୍ଟୁ ।—ଆଉ ଘର ?

ଲତ ।—( କାନ୍ଦି ) ଘର ବି ନିଲାମ ହୋଇଗଲା !

ବଣ୍ଟୁ ।—ଅରେ—କଅଣ କହିଲୁ ! ( ମୂର୍ଚ୍ଛା ଓ ପତନ । )

ରତ୍ନ ।—( ଉଚ୍ଚୈଃସ୍ୱରେ କାନ୍ଦି ) ମୋ ବୋଉଲୋ—ଏ କଅଣ ହେଲା—ପାଣି କାହିଁଲୋ—ପାଣି ( ବ୍ୟସ୍ତଭାବେ ଦଉଡ଼ି ଯାଇ ବଣ୍ଟୁପ୍ରିୟାର ପାର୍ଶ୍ୱରେ ବସି କୋଡ଼ରେ ମସ୍ତକ ରଖି କରି କାନରେ ଫୁଙ୍କ ପ୍ରଦାନ । )

[ ସାଧକାମାର ପ୍ରସ୍ଥାନ ଓ ଜଳପାତ୍ର ହସ୍ତେ ଚନ୍ଦ୍ରମାଳ ସହ ପ୍ରବେଶ ।

ସାଧ ।—( ପାର୍ଶ୍ୱେ ବସି ମୁଖରେ ଜଳସେଚନ କରୁ କରୁ ଦୀର୍ଘ ନିଃଶ୍ୱାସ ପକାଇ ) ଏଡ଼େ ବଡ଼ ଲୋକର ହାତ ଧରି ଏଡ଼େ ହୀନ-କପାଳ !

ଚନ୍ଦ୍ର ।—( ପାର୍ଶ୍ୱେ ବସି ପଙ୍ଖା ବାଆ କରୁ କରୁ ) ଏଡ଼େ ଭଲଲୋକ ସଂସାରେ ଦେଖା ନାହିଁ ! ସ୍ୱାମିଙ୍କ ଗୁରୁଠାରୁ ବଳ ଜାଣନ୍ତି ପରା ! କପାଳ ଫେଟ—ନୋହିଲେ ଏଡ଼େ ବଡ଼ ଘରକୁ ଆସି ଏମନ୍ତ ହୋଇ ପଡ଼ିଥାନ୍ତେ କି !

ରତ୍ନ ।—( କ୍ଷୀଣସ୍ୱରରେ ) ଅଳ୍ପ ଅଳ୍ପ ନିଃଶ୍ୱାସ ବହୁଛି ଅଛୁଟ । ଚାଲ ଭୂଇଁରୁ ଉଠାଇ ନେଇ ଆର ଘର ଖଟ ଉପରେ ଶୁଆଇ ଦେବା ।

[ ରତ୍ନମଞ୍ଜରୀ, ସାଧକା ମା ଓ ଚନ୍ଦ୍ରମାଳୀ ଧରାଧରି କରି ବଣ୍ଟୁପ୍ରିୟାକୁ ନେଇ ପ୍ରସ୍ଥାନ ଓ ତତ୍ପୃଷ୍ଠାରୁ ବନା ବେହେରା ଓ ରତନ ବାରିକର ପ୍ରସ୍ଥାନ ଏବଂ ଅଦୃଷ୍ଟ-କୁମାରୀଗଣର ପ୍ରବେଶ ।

ଅ, ଲୁ । — ( ନୃତ୍ୟ ସହିତ ଗୀତ । )

ରାଗିଣୀ ଭୈରବୀ । ତାଳ ଖେମଟା ।

ସରଳ ସୁଖ ସମ୍ପଦ ।

କାହିଁ ଗଲା କୁଳଶୀଳ ଏକ ବିପଦ ! ଘୋଷା ।
କାହିଁ ଗଲା ଘରଦ୍ୱାର, କାହିଁ ଲକ୍ଷ ବ୍ୟବହାର,
କାହିଁ ଲୋକ ବାକ ସଙ୍ଗ ପ୍ରିୟ ଶବଦ ! ୧ ।
ଯହିଁ ସୁଖ ସମ୍ଭାଷଣ, ଶୁଭୁଥିଲା ସହ ଦିନ ।
ଫାଟିଲା କପାଳ ବନ୍ଦେ ଲୋଚନ-ନଦ ! ୨ ।
ଛାଡ଼ ସର୍ବେ ଅଭିମାନ ବୃଥା ଏ ସଂସାର ଜାଣ,
ଜାଣୁ ଜାଣୁ ଅଗ୍ନିକୁଣ୍ଡେ ନ ଦିଅ ପଦ । ୩ ।

———

ଯବନିକା ପତନ ।

———

# ପଞ୍ଚମ ଅଭିନୟ ।

## ପ୍ରଥମ ଦୃଶ୍ୟ । କୋଠଘର ।

[ସଦାନନ୍ଦ ଦକ୍ଷିଣହସ୍ତରେ କ୍ଷୁର ଧାରଣ କରି ପର୍ଯ୍ୟଙ୍କୋପରି ଉପବିଷ୍ଟ ।]

ସଦା ।—( କ୍ଷୁର ଖୋଲି ଜିଭରେ ଉତ୍ତମରୂପେ ପକାଇ ଚତୁର୍ଦ୍ଦିଗ ନିରୀକ୍ଷଣ ପୂର୍ବ୍ବକ ସ୍ୱଗତ ) ହା ବିଧାତଃ ! ସଂସାର ଏହିପରି ! —କାହା କରମରେ କ୍ଷୀରି କ୍ଷୀରସାର କାହା କରମରେ ଲଡ଼ୁ—କାହାକରମରେ ଖାରଅଖଡ଼ା ଗେଣ୍ଡୁବାଇ ଗେଣ୍ଡୁବାଇ ମରୁ !—ମୋର କରମ ଫାଟିଛି, କ୍ଷୀରିଲଡ଼ୁ ବଦଳରେ ଖାରଅଖଡ଼ା ମିଳୁଛି ! ତାକୁ ଗେଣ୍ଡୁବାଇ ହିନ ନେଲେ କି ଚଳନ୍ତା ମାତ୍ର ବନ୍ଦିଶାଳର ତରଭ ମୋତେ ଖାଇ ଯାଉଛି— ମୁଁ କରିବି କିସ ? ବେଡ଼ି ଉପରେ କୋରଡ଼ା ଥିବ ବୋଲି କିଏ ଜାଣିଥିଲା ? ଯେବେ ସମ୍ପତ୍ତି ଥିବା ଏ ରିଣର ଚତୁ-ର୍ଗୁଣ ଅଦାୟ ହୋଇ ପାରିଥାନ୍ତା !—( ବାମହସ୍ତ କପାଳରେ ମାରି ) ହା ଦୈବ ! ଶାଗମାଛ ମୂଲରେ ଜମିଦାରୀ ଲାଖଟଙ୍କ ଗଲା କହିବି କାହାକୁ ? ସବୁ କପାଳର ଦୋଷ ! କପାଳ ଫେଣ୍ଟି କୋହୁଥିଲେ ଘର ଢେଙ୍କି କୁମ୍ଭୀର ହୋଇଥାନ୍ତା କି ! ହାୟରେ କୁମାସ୍ତା ! ତୁମ୍ଭେ ସବୁ କଳପାର । ଏ ଅଡ଼େ ଏକ କଥା ସେ ଅଡ଼େ ଏକ କଥା । ମୋ କଢରେ ଗୋଟାଯାକ ମୋର ଅଉ ଅପଣା ଗଣ୍ଠିରି ବାନ୍ଧିବା ପାଇଁ ତେଣେ ମୋର ସର୍ବ୍ବନାଶ କରିବାକୁ ଜଣେ କୁଣ୍ଠିତ ନୁହ । ମୋର ଖାଇ ମୋର ତଣ୍ଟିରେ ଭୋଡ଼ ଦେଲ ! କାହିଁ କି ? ରହ ସହ ଖାଇଥିଲେ ତୁମ୍ଭେ ବି ଖାଇଥାନ୍ତ ମୁଁ ବି ଖାଇଥାନ୍ତି । ମୋତେ ତଳକ ପେଲଦେଇ ତୁମ୍ଭର କି ଲାଭ ହେଲା ?—ଏବେ ବୁଝିଲି ତୁମ୍ଭେ ଗୋଟିଏ ଅଭୂତ ଜନ୍ତୁ—ତୁମ୍ଭର ଗୁରୁଖୁରେକୁ

ନମସ୍କାର ( ହାତଯୋଡ଼ ନମସ୍କାର କରଣ ) ! ତୁମ୍ଭେ ମୋ ନିକଟକୁ ଗୃହକର୍ମ କରିବାକୁ ଆସିବା ବେଳେ ଗୃହିଣୀ କନାରେ ଆସିଥିଲ, ଘରେ ଖାଇବାକୁ ନ ଥିଲା – ଏବେ ତୁମ୍ଭେ ଜମିଦାର ! – ହେଉ, ଧର୍ମ ସହିବ କି ? – ଆଉ ସଙ୍ଗ ! ସେ ବ ସେହିପରି ।—କାହାରି ହରିଣୀ କେ ନେଇ ବାନ୍ଧେ— ପରପୁଅ ଲାଗି ଯୋଗିଆ କାନ୍ଦେ ! ତାଙ୍କର କି ଯାଏ ? ଖାଉ ଥିବେତ ଗାଉଥିବେ – ଖାଇବାକୁ ନ ମିଳିଲାତ ବରଫାଙ୍କି ପରି ଆଉଆଡ଼େ ଅଡ଼ୁଜିଯିବେ ! ଥିଲାବେଳକୁ କେତେ ହଉଜୁ-ଥିଲେ – ଗଲାଉତ୍ତାରୁ କିଏ କାହାକୁ ପଚାରେ ?—ଆଉ ମହା-ଜନ ! ତୁମ୍ଭେ ସାକ୍ଷାତ୍ ମାୟାବୀ ରାକ୍ଷସ । ମାୟାକର ପ୍ରଥମେ ଲୋ-କଙ୍କୁ ଭୁଲାଇନେଇ ଶେଷକୁ ଗ୍ରାସ କରିବାପାଇଁ ହାଁ କର । ସେ ଜାଲରେ ପଡ଼ିଲେ ଉଦ୍ଧରିବା ଭାରି କଠିନ ! ସେ ପାଟିର ହାଁ ଦେଖିଲେ ଦେହର ରକ୍ତ ଶୁଖିଯାଏ – ପିଣ୍ଡରୁ ପ୍ରାଣ ବାହାରି ଯାଏ ।—ଅଉ ହାକିମ ! ହଜୁର୍ କଲର ମନୁଷ୍ୟ—ଆଇନର କଲ ଯେଉଁଆଡ଼େ ନେଇଯିବ ସେହିଆଡ଼େ ଯିବେ – ସେଥିରେ କେହି ସଞ୍ଚୁ ବା ମରୁ ! ଦୟାମାୟା ଛାଡ଼ପତ୍ର ନେଇ ଯାଇଛନ୍ତି ! ନା, ସଂସାରର କଥା ତେର ଦେଖାଗଲା – ଆଉ ନା ! ଏବେ ତୁନି ହୋଇ ଏକାକୀ ଘରକୋଣରେ ବସିଥିଲେ ଚଳିଥାନ୍ତା —ମାତ୍ର ପିଆଦା ! ଏତେ ସମ୍ପତ୍ତି ଗଲା—ଘରଦ୍ୱାର ଗଲା —ଅନୁଗ୍ର ମହାଜନର ବାକୀ କେତେ ରହିଲା ଯେ ପିଆଦା ଧରିନେଇ ବନ୍ଦୀଶାଳରେ ଦେବ ! କେଡ଼େ ବଡ଼ଲୋକ ମୁଁ ନ ଥିଲି – ଏବେ ହାତରେ ବନ୍ଧା ହୋଇ ଯିବି ! ଏହା କି ଅଳ୍ପ ଲଜ୍ଜାର ବିଷୟ ! ମରଣ ଏହାଠାରୁ ଶତସହସ୍ର ଗୁଣରେ ଭଲ । —( ଛୁରିକୁ ନିରୀକ୍ଷଣ କରି ) ଏତେବେଳେ ତୁହି ଏକା ମୋର ସଙ୍ଗୀ—ତୁ ନ ଥିଲେ ମୋର କଥା କହିଲେ ସରନ୍ତା

ନାହିଁ ।—କଥାରେ କହନ୍ତି—ନାରୀରେ ମରେ, ତହିଁରୁ ବଞ୍ଚିଲେ ସଂସାରେ ସରେ ।—ଋଣଟାବ ସେହିପରି ।—ଯେଉଁ ମହାଜନ ମୋତେ କେତେ ଆଦର ସମ୍ମାନ କରି ବିଛଣାରେ ବସାଉଥିଲା ସେ ପୁଣି ମୋତେ ପିଆଦା ଦେଇ ଦାଣ୍ଡରେ ନାନ୍ଧନେଇ ଯିବ !—କି ହଟହଟାର କଥା !! ଏତେ ହଟହଟାରେବ ଜୀବନ ରହିଛି !—ଛାତି ଦରଦର ହୋଇ ଛିଣ୍ଡି ଯାଉଛି, ଫାଟି ଯାଉ ନାହିଁ କାହିଁକି ?—ହା ବିଧାତଃ ! ମୋ କପାଳରେ ଯାହା ଲେଖିଥିଲୁ ଲେଖିଥିଲୁ, ଏ ସ୍ତ୍ରୀଲୋକଗୁଡ଼ାଙ୍କୁ ଘାଣ୍ଟିଲୁ କାହିଁକି ? କାହିଁକି ମୋତେ ଗୋଟାଏ ବାହା କରାଇ ଦେଲୁ ? କାହିଁକି ପୁତ୍ର ପାଇ ଏତେ ଆନନ୍ଦିତ ହେଉଥିଲି ? କାହିଁକି ପୁଅକୁ ବିବାହ ଦେଲି ? କାହିଁକି ଘରକୁ ଗୋଟିଏ ପୁଣି ପରଝିଅ ଆଣିଲି ? ସେ ପରଝିଅର ଦଶା ଏବେ କି ହେବ ? ତାରବି କପାଳ ମୋରି ପରି ଫୁଟିଛି । ସେତ ସାଧବଘର ଝିଅ—ତାର ସାତ ଭାଇ ଜଣକୁ ଜଣେ ଧନୁର୍ଦ୍ଧର—ତାର ବାପ ଘରେ ପାଲିଙ୍କି-ପାଟଛତା ଝୁଲୁଛି—ତାର କପାଳରେ କଣ ଏହି ଦଶା ଥିଲା । ସେ କି ବୋଲି ବାପଘରେ ଠିଆ ହେବ ?—ହାୟ ! ଥଉ ଏ ପାପ-ଜୀବନ ରଖିବାର ନୁହେ ! ସ୍ତ୍ରୀ ପୁତ୍ରାଦିର ଦୁର୍ଦ୍ଦଶା ମୋର ଦୁର୍ବୁଦ୍ଧିରୁ ଘଟିଲା ସିନା ! ଆଉ ଜୀବନ ରଖି କିଛି ପ୍ରୟୋଜନ ନାହିଁ । ଏ ଜୀବନ—ଏ କଳଙ୍କମୟ ଜୀବନ ଯେତେଶୀଘ୍ର ଯାଏ ସେତେ ଭଲ ।—( ପୁଣି ଛୁରିକୁ ନିରୀକ୍ଷଣ କରି ) ତୁ ମୋର ପରମବନ୍ଧୁ । ବିଧାତା ମୋର ଏ ଜୀବନ ସହଜରେ ନେବେ ନାହିଁ ବୋଲି ଯେତେ ଅଣ୍ଟ କରୁଛନ୍ତି ତୁ ନ ଥିଲେ ମୋର କଥାତ ସରିଥିଲା ! ସ୍ତ୍ରୀଟା ତନ ଦନ ହେଲା ଖିଅ-ପିଅ ଛାଡି ଦେଇଛି—ମୁଁ କି ବୋଲି ତାର ମୁହଁ ଦେଖିବ !

ଧିକ୍ ଏ ଜୀବନ ! ଧିକ୍ ଏ ମନୁଷ୍ୟତା ! ଧିକ ଏ ଜୀବନ-ଧାରଣ !—ନା—ଆଉ ନା—(ଚକ୍ଷୁ ମୁଦ୍ରିତ କରି ଛୁରୀକୁ ତଣ୍ଟିରେ ଲଗାଇ) ଯା ପ୍ରାଣ ଯା—

[ହଠାତ୍ ବଳପୂର୍ବକ କବାଟ ଖୋଲି କନାପୁଟୁଳିଟିଏ ବାମହସ୍ତରେ ଘେନି ଅଳଙ୍କାରବର୍ଜ୍ଜିତା ବିଷ୍ଣୁପ୍ରିୟାର ପ୍ରବେଶ ।

ବିଷ୍ଣୁ।—(ଦଉଡ଼ି ଆସି ସଦାନନ୍ଦର ଦକ୍ଷିଣ ହସ୍ତକୁ ଓଟାରି ଧରି) ଏ କି ! ସତେତ ଚନ୍ଦ୍ରମାନ କହୁଥିଲେ ଛୁରିଟା ଶୋଇଲେ ଘରୁ ଏଠିକି ତୁମେ ଘେନିଆସିଲ—କି ଏହି କାଣ୍ଡ କରିବା ପାଇଁ ? —ଦୈବ ଯୋଗେ ତଣ୍ଟିରେ ଛୁରି ବସି ନାହିଁ—ମୋର ତ ଭେଲା ବୁଡ଼ାଇ ଥିଲ !

ସଦା।—(କିଞ୍ଚିତ ରୁଷ୍ଟ ହୋଇ) ତୁମ୍ଭେ ବି ଏତେବେଳକୁ ମୋର ଶତ୍ରୁ ହେଲ ! ବିଧାତା ଆଣି ତୁମ୍ଭେ ବି ଏତେବେଳକୁ ରକ୍ଷା କରିବାକୁ ଥିଲ ?—ତୁମ୍ଭର ଭେଲା ବୁଡ଼ିଛି ନା ବୁଡ଼ିବାକୁ ବାକୀ ଅଛି ?

ବିଷ୍ଣୁ।—(ବିନୀତ ଭାବରେ) କାହିଁକି ମୋର ଭେଲା ବୁଡ଼ିବ ? ତୁମେ ମୋର ଶାଳଗ୍ରାମଶିଳା—ପୂଜୁଥିଲେ ସବୁ ପାଉଥିବି ! —ମୋର ଭେଲା ବୁଡ଼ିବ ନାହିଁ ।

ସଦା।—ପୂଜା କରିବ ନା ଦାଣ୍ଡରେ ହଟହଟା ହେବ ଦେଖିବ ।

ବିଷ୍ଣୁ।—କାହିଁକି ? କିଏ ତୁମକୁ ଦାଣ୍ଡରେ ହଟହଟା କରିବ ? ଏଡ଼େ ସାଧ କାହାର ?—ଏଡ଼େ ବାପର ପୁଅଟା କିଏ ଅଛି ଦେଖିବ !

ସଦା।—ଏ ବଡ଼ ଟାଣ କଥା—ସରକାରୀ ପିଅଦାଠାରୁ ତୁମ୍ଭର ଅଣ୍ଟ ତ ଅଧିକ ।

ବିଷ୍ଣୁ।—ଅଧିକ ନୋହିବ କାହିଁକି ? ଉପାୟ କଲେ ଅଣ୍ଟିକି ରହେ ନାହିଁ ?—ବୋଲେ—ମନକୁ ମନା, ମନ ଦୟା କଲେ ପାଇବୁ

ସୁନା । ତୁମର ଉଡ଼ା ବୁଦ୍ଧି ଦେଖି ମୁଁ ସେହି ଦିନୁ ନ ଖାଇ ନ ପିଇ ସାତ ଖଣ୍ଡି ଗଢ଼ାଇ ରଖିଥିଲି କାହିଁକି ?

ସଦା ।—ସେଥିରେ କିସ ହେବ ?

ବଙ୍କୁ ।—କିସ ହେବ ?—ଦେଖୁଛତ ମୋର ହାତରେ ଖାଲି ପଟେ ଶଙ୍ଖା ଅଛି । ମୋର ଅଳଙ୍କାର ସବୁ କାଢ଼ି ବଣିଆ ଡକାଇ ବୁଝିଲି ଯେ ତହିଁରେ ଅକ୍ଳେଶରେ ଅଧେ ଟଙ୍କା ଉଠିଯିବ । ବାକି ଅଧକ ଟଙ୍କା ସକାଶେ ମୋର ଭାବନା ହୋଇ ଥିଲା—ମନେ କରିଥିଲି ତାହାକୁ ନ କହି ସନ୍ଧକାଳରେ ସମୁଦ୍ର ଘରକୁ ଯାଇ ତହିଁର ବ୍ୟବସ୍ଥା କରିଥାନ୍ତି ; ମାତ୍ର ବୋହୁ ଅଧେ ଟଙ୍କା ନିଅଣ୍ଟ ହେବାର ଶୁଣି ସେହିକ୍ଷଣି ଆପଣାମନକୁ ଦେହର ଅଳଙ୍କାର ସବୁ ଖୋଲି ଦେଲା—ବଣିଆ ମୂଲ କରି ଦେଖିଲା ଯେ ବାକି ଅଧକ ତହିଁରେ ସୁନ୍ଦର ଶୁଝିଯିବ ।

ସଦା ।— ତାପରେ ?

ବଙ୍କୁ ।— ତାପରେ ତୁମେ ଆମେ ଉଦାସୀ ଭାବରେ ଶ୍ରୀକ୍ଷେତ୍ରକୁ ଯାଇ ନିତ୍ୟ ଦେବଦେବଙ୍କ ଶ୍ରୀ ମୁଖ ଦର୍ଶନ କରିବା - ଯହିଁଠି ଲକ୍ଷଲକ୍ଷ ପ୍ରାଣୀ ପୋଷି ହେଉଛନ୍ତି ସେଠି କ'ଣ ଏ ପେଟଯୋଡ଼ାଏ ପୋଷା ନ ହେବ ?

ସଦା ।—ତାପରେ ?

ବଙ୍କୁ ।—ପୁଅ ବୋହୂ ?—ତାଙ୍କୁ ସମୁଦ୍ର ଘରକୁ ପଠାଇଦେବା—ସମୁଦ୍ର କହି ପଠାଇଛନ୍ତି ।

ସଦା ।— ( ସରଳ ଭାବରେ ) ତୁମ୍ଭେ ଘରେ ବସି ଏଡ଼େ କାଣ୍ଡ କଲ—ମୁଁ ଦାଣ୍ଡକୁ ବାହାରି କ ଅଯୋଗ୍ୟ ହେଲି !—ଆଜି ଠାରୁ ତୁମ୍ଭେ ମୋର ଶିକ୍ଷାଗୁରୁ—ତୁମ୍ଭର କଥା ସାର ।—ମୋର ମନ ଉଚ୍ଚାଟ ହେଲାଣି—ଚାଲ ଶ୍ରୀକ୍ଷେତ୍ରକୁ ଯାଇ ଯେଉଁ

ପ୍ରଭୁ ଜନ୍ମ ଦେଇଥିଲେ ସେହି ପ୍ରଭୁଙ୍କୁ ଜଣାଇବା କର୍ମ କାହିଁକି ସାନ କଲେ ?

ବିଷ୍ଣୁ ।—ଏବେ ନାଥ ଏ ଅଲଙ୍କାର ସବୁ ।—( ବାମହସ୍ତରେ ପୁଟଳଟି ସଦାନନ୍ଦର କ୍ରୋଡ଼ରେ ରଖିଦେଇ ) ତୁମର ଭରଣିହଜାର ଟଙ୍କା ଧନକାଶେ ଉଣ୍ଡଅଛି ବାନ୍ଧିବାରଚ—ସହଜରେ ଏ ଅଲଙ୍କାର ସବୁର ମୂଲ୍ୟ ତେତିକ ହେବ । ମହାଜନ କାଳେ ପେଅ-ଦା ସଙ୍ଗେ ଦୁଆରେ ବସିଚ—ସେ ଅଲଙ୍କାର ନେଇ ତୁମଙ୍କୁ ଏତ୍କାବେଳକେ ମୁକ୍ତି ଦେବାକୁ ରାଜି ଅଛି—ତୁମେ ତାଙ୍କୁ ଦେଇ ଆସ ।—ଆଜ ଦଣ୍ଡ କମଣ୍ଡଳୁ ନେଇ ଘରୁ ଯାତ୍ରା କରିବା । ( ବାମହସ୍ତରେ ସଦାନନ୍ଦର ଦକ୍ଷିଣ ହସ୍ତକୁ ଧରି ଦକ୍ଷିଣ ହସ୍ତରେ ଛୁରିଟି ସଦାନନ୍ଦ ହସ୍ତରୁ କାଢ଼ି ନେଇ ଦୂରକୁ ନିକ୍ଷେପ କରି ) ଆଉ ବିଲମ୍ବ କର କାହିଁ—ଉଠ ।

ସଦା ।—(ଗୃହର କୋଣରେ ଅଲଙ୍କାର ପୁଟଳ ନେଇ ) ହେଉ ଚାଲ । ଯାହା କପାଳରେ ଅଛି ହେବ—ମନୁଷ୍ୟର ଅସ୍ଵତ୍ଵ କିଛି ମାତ୍ର ନାହିଁ । (ଗାତ୍ରୋତ୍ଥାନ କରଣ । )

[ ଉଭୟର ପ୍ରସ୍ଥାନ ଓ ପଟପରିବର୍ତ୍ତନ ।

— — —

ଦ୍ୱିତୀୟ ଦୃଶ୍ୟ—ରାଜମାର୍ଗ ।

[ ମୃଦଙ୍ଗ କରତାଳ ସହିତ କେତେକ ଜଣ ବୈଷ୍ଣବମେଳରେ ଗୈରିକ ବସ୍ତ୍ର ଧାରଣ ପୂର୍ବକ ହରି ସଂକୀର୍ତ୍ତନ କରୁ, ସଦାନନ୍ଦର ଗମନ ଓ ପଶ୍ଚାତ୍ ଭିକ୍ଷାପାତ୍ର-ହସ୍ତେ ଗୈରିକ ବସନରେ ବିଷ୍ଣୁପ୍ରିୟାର ଅନୁଗମନ । ]

## ସଂକୀର୍ତ୍ତନ ।

ସମସ୍ତେ । — ମନ ଚାଲ ନୀଳାଚଳ ଯିବୁ ।
ନୀଳାଚଳେ ଯାଇଁ ଚକାଡୋଳା ଦେଖିବୁ । ଘୋଷା ।

ଜନୈକ ବୈଷ୍ଣବ । — ସେ ନୀଳାଚଳେ ଛନ୍ତି ନୀଳ ବିହାରୀ,
ଡାକୁଛନ୍ତି ଭକ୍ତେ ହସ୍ତ ପ୍ରସାରି —

ସଦା । — ସବେ ଗାଅରେ - ଗାଅରେ,
ସୁଧା ହରି ନାମ ମୁଖେ ଗାଅରେ,

ସମସ୍ତେ । — ମୁଖେ ହରି ନାମ ଗାଇ ଆସରେ,
ଜ, ବୈ । — ଡାକୁଛନ୍ତି ହରି, ହସ୍ତକୁ ପ୍ରସାରି,
ଚକା ଡୋଳେ ଚାହିଁ ଦୁଃଖକୁ ନିବାରି —

ସଦା । — ଚାଲ ଭକ୍ତ ଗଣେ,
ଚାଲ ଚାଲରେ ଅଶୁ ଭକତ ଗଣେ —

ସମସ୍ତେ । — ଚାଲରେ ଅଶୁ ଭକତ ଗଣେ —
ଜ, ବୈ । — ଭବ-ଜ୍ୱାଳା ନିବାରିବ, ଶ୍ରୀମୁଖ ଦେଖିବ,
ସମସ୍ତେ । — ଜ୍ୱାଳା ନିବାରିବ ଶ୍ରୀମୁଖ ଦେଖିବ,
ଜ, ବୈ । — ସୁଧା-କୈବଲ୍ୟ ସେବିବ, ତାପ ନିବାରିବ,
ସମସ୍ତେ । — କୈବଲ୍ୟ ସେବିବ ତାପ ନିବାରିବ —

ସଦା । — ଭବ-ବିଷୟ ମୋହ-ପାବକ
ଋଣ ଅଟଇ ବିଷମୋଦକ —
ଖାଇବାକୁ ମିଠା ଜୀବନ ସଂପୁଟା,
ଗେଲେ କୋଳେ ଧରେ ହେଲେ ପ୍ରାଣେ ମାରେ —
ଛାଡ଼ି ଭବ ଜାଲ ଶୀଘ୍ର ଶୀଘ୍ର ଚାଲ —
ଦେଖି ବୈକୁଣ୍ଠ ନାଥଙ୍କୁ ବୈକୁଣ୍ଠ ଲଭିବୁ । ୧ ।

ଯବନିକା ପତନ ।

ସମ୍ପୂର୍ଣ୍ଣ ।

———